# ସୃଜନିକା ଚିନ୍ତାଧାରା

ସବୁ ବୟସର ଓ ଶ୍ରେଣୀର ଲୋକମାନଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ କରାଇବା ହେଉଛି ସୃଜନିକାର ମୁଖ୍ୟ ଲକ୍ଷ୍ୟ । ବିଚାର କରିବା, ପ୍ରଶ୍ନ ଉଠାଇବା, ଆତ୍ମସମୀକ୍ଷା ଆଦି ଏହି ଦୃଷ୍ଟିକୋଣର ପରିଚାୟକ । ପିଲାଦିନରୁ ଏହି ଗୁଣଗୁଡ଼ିକର ବିକାଶ କରାଯାଇ ପାରିଲେ ଦେଶ ଓ ସମାଜର ଉନ୍ନତି ଆପେ ଆପେ ହୋଇପାରିବ । ତେଣୁ ପ୍ରଥମ ଅବସ୍ଥାରେ ସୃଜନିକାର କାର୍ଯ୍ୟକ୍ରମଗୁଡ଼ିକ ପିଲାଙ୍କ ପାଇଁ ଏବଂ ପର ଅବସ୍ଥାରେ ପିଲାଙ୍କ ମାଧ୍ୟମରେ ଶିକ୍ଷକ/ଅଭିଭାବକ/ଜନସାଧାରଣଙ୍କ ପାଇଁ କରାଯାଉଛି । ଏସବୁ ଦ୍ୱାରା କ୍ରମେ ସ୍କୁଲ ଓ ଶିକ୍ଷା ବ୍ୟବସ୍ଥାର ଆବଶ୍ୟକୀୟ ପରିବର୍ତ୍ତନ ଆସିପାରିବ ବୋଲି ଆମର ଆଶା ।

ଏହି ଚିନ୍ତାଧାରାକୁ ବାସ୍ତବ ରୂପ ଦେବା ପାଇଁ ଆମର ବିଭିନ୍ନ କାର୍ଯ୍ୟକ୍ରମ ଭିତରେ ରହିଛି ବିଜ୍ଞାନ ତରଙ୍ଗ ପତ୍ରିକା ଓ ଅନ୍ୟ ବହି ପ୍ରକାଶନ, ଶିକ୍ଷକ କର୍ମଶାଳା, ବିଜ୍ଞାନ ମେଳା, ବିଜ୍ଞାନ ଖେଳନା ବିତରଣ ଆଦି । ଆମର ମଡେଲଗୁଡ଼ିକ ତାଲାପଡ଼ି ରହୁଥିବା କିଛି ଜଟିଳ ଓ ଦାମିକା ଜିନିଷ ନୁହେଁ । ଏଗୁଡ଼ିକ ସହଜରେ ଓ ଶସ୍ତାରେ ହୋଇପାରୁଥିବା ଜିନିଷ ଯାହାକୁ କେହି ହାତରେ ନେବାକୁ ଡରିବେ ନାହିଁ । ବିଜ୍ଞାନର ତଥ୍ୟକୁ ବୁଝାଇ ପାରୁଥିବା ଜିନିଷଗୁଡ଼ିକ ଆମ ପାଇଁ ପାଠ୍ୟୋପକରଣ ନୁହେଁ, ବରଂ କିଛି ମଜାଦାର ଖେଳନା । ନିଜ ହାତେ ଗଢ଼ିବା - ଖେଳି ଖେଳି ଶିଖିବା - ଭଲ ଭାବେ ବୁଝିବା, ହେଉଛି ଆମର ଜୀବନ ଦର୍ଶନ ।

# ଅଠା କୁହୁକ

# Atha Kuhuka

*ଲେଖା ଓ ଚିତ୍ର*
ଶିବ ପ୍ରସାଦ ପାତ୍ର

*Text and Illustrations*
Siba Prasad Patra

*ସମ୍ପାଦନା*
ପୁଷ୍ପଶ୍ରୀ ପଟ୍ଟନାୟକ

*Editing*
Puspashree Pattnaik

*ମୁଦ୍ରଣ*
ଶୋଭନ
୧୦୬, ଆଚାର୍ଯ୍ୟ ବିହାର,
ଭୁବନେଶ୍ବର ୭୫୧ ୦୧୩
ଫୋନ୍: (୦୬୭୪) ୨୫୪୩୪୨୫

*Printing*
Shovan,
106, Acharya Bihar,
Bhubaneswar 751 013
Tel: (0674) 2543425

*ଅଙ୍ଗସଜ୍ଜା ଓ ପ୍ରକାଶନ*
**ସୃଜନିକା**
ଜାଗମରା, ଡାକ: ଖଣ୍ଡଗିରି,
ଭୁବନେଶ୍ବର ୭୫୧ ୦୩୦
ଫୋନ୍: ୨୩୫୦ ୬୬୪

*Design, Layout & Publication*
SRUJANIKA
Jagamara, PO: Khandagiri,
Bhubanewsar 751 030
Telephone: 2350 664

*ପ୍ରଥମ ସଂସ୍କରଣ:* ମାର୍ଚ୍ଚ ୨୦୦୫

First Edition: March 2005

ପିଡିଲାଇଟ ଇଣ୍ଡଷ୍ଟ୍ରିଜ୍ ଲିମିଟେଡ୍ ଦ୍ଵାରା ପ୍ରକାଶିତ ଫେଭିକ୍ରାଫ୍ଟ ପତ୍ରିକା ହେଉଛି ଏହି ବହିଟିର ପ୍ରେରଣା ଓ ଆଧାର । ଏଥିରେ ଦିଆଯାଇଥିବା ଅଧିକାଂଶ କାମର ଧାରଣା ସେଥିରୁ ନିଆଯାଇଛି । ଆମେ ତାଙ୍କ ପାଖରେ ଏବଂ ଅନ୍ୟ ଉତ୍ସ ପାଖରେ କୃତଜ୍ଞ ।

ମୂଲ୍ୟ: ଟ ୧୫.୦୦

Price: Rs.15.00

# ମୁଖବନ୍ଧ

ଆମ ଚାରିପାଖରେ ଆମେ ପ୍ରତିଦିନ କେତେ ନା କେତେ ଜିନିଷ ଦେଖେ । ସେ ଭିତରୁ କେତେ ଆମ ମନକୁ ଛୁଏଁ ଓ ସେସବୁ ଆମର ମନେରହେ । ସେଥିରୁ କିଛି ବା ସେହିଭଳି କିଛି ଜିନିଷ ଆମେ ପାଖରେ ରଖିବା ପାଇଁ ଇଚ୍ଛା କରିଥାଏ ! ମଣିଷ ତା'ର ମୁଣ୍ଡ ଖେଳାଇ ଅନେକ ନୂଆ ଜିନିଷ ବି ସୃଷ୍ଟିକରେ । ଏହି ପ୍ରକାରର କାମକୁ ହିଁ ଆମେ ସୃଜନଶୀଳତା କହିଥାଏ ।

ପ୍ରତି ପିଲାର ଗୋଟିଏ ପେଡ଼ି ଥାଏ । ସେଥିରେ ସେ ଅନେକ ରକମର ଜିନିଷ ରଖିଥାଏ । ସେସବୁ ଜିନିଷର ଅସଲ ରୂପ ଯାହା ହେଉ ନା କାହିଁକି, ପିଲା ଆଖିରେ ତାହାର ରୂପ ବଦଳିଯାଏ । ପ୍ରତି ମଣିଷ ଭିତରେ ସୃଜନଶୀଳତା ରହିଛି । ସୁଯୋଗ ପାଇଲେ ସେ ସବୁ ବିକଶିତ ହୋଇଥାଏ । ସୁଯୋଗ ପାଇ କିଏ ବଡ଼ କଳାକାର ବା ଶିଳ୍ପୀ ହୋଇପାରେ । ସୁଯୋଗ ଅଭାବରେ ଆଉ କାହାର ପ୍ରତିଭା କେଉଁଠି ହଜିଯାଏ । ସେହି ହଜିଯାଉଥିବା ପ୍ରତିଭା ସବୁଙ୍କୁ ସୁଯୋଗ ଦେବା ଓ ତାଙ୍କ ମନ ଭିତରେ ଶୋଇ ରହିଥିବା ସୃଜନଶୀଳତାକୁ ରୂପ ଦେବା ପାଇଁ ଉତ୍ସାହିତ କରିବା ଏହି ବହିଟିର ଲକ୍ଷ୍ୟ ।

ଆଜିକାଲି ତ ଅନେକ ପ୍ରକାରର ଅଭିନନ୍ଦନ ପତ୍ର, ଘର ସଜାଇବା ଜିନିଷ ବଜାରରେ ମିଳୁଛି । କିନ୍ତୁ ଏସବୁ ଜିନିଷ ହାତରେ ତିଆରି କଲେ ତା'ର ମୂଲ୍ୟ ଅନେକ ବଢ଼ିଯାଏ । ପିଲା ତା'ର ହାତ, ମନ ଓ ଆଖିକୁ କାମରେ ଲଗାଇବାର ସୁଯୋଗ ପାଏ । ଏସବୁ ବି ବେଶ୍ କମ୍ ଦାମ୍‌ରେ ହୋଇପାରିବ । ଏଥିପାଇଁ କିଛି ସ୍ୱତନ୍ତ୍ର ଯନ୍ତ୍ରପାତି ବା ଜିନିଷ ଦରକାର ହେବନାହିଁ । କେବଳ ଗୋଟିଏ ଆଗ୍ରହୀ ମନ ହିଁ ଯଥେଷ୍ଟ ।

ଅନେକ ବର୍ଷ ତଳେ ପିଡିଲାଇଟ ଦ୍ୱାରା **ଫେଭିକ୍ରାଫ୍ଟ** ନାମକ ଗୋଟିଏ ପତ୍ରିକା ପ୍ରକାଶିତ ହେଉଥିଲା । ଏହି ବହିଟିର ପ୍ରେରଣା ଓ ଆଧାର ହେଉଛି ସେହି ପତ୍ରିକା । ଏଥିରେ ଦିଆଯାଇଥିବା ଅଧିକାଂଶ କାମର ଧାରଣା ସେହି ପତ୍ରିକାରୁ ନିଆଯାଇଛି । କିନ୍ତୁ ଏହି ବହିର ଉପସ୍ଥାପନା ଏବଂ ଚିତ୍ରଗୁଡ଼ିକ ମୌଳିକ ବା ଅନୁସୃଜିତ । ଏଥିରୁ ଅନେକଗୁଡ଼ିଏ କାମ ପ୍ରଥମେ ସୃଜନିକାର ରବିବାର କ୍ଲବ ପିଲାଙ୍କ ସହ କରାଯାଇଥିଲା । ପିଲାମାନେ ବହୁତ ଖୁସିରେ ଏସବୁ କରୁଥିଲେ । ତାଙ୍କର ଆଗ୍ରହ ଏବଂ ସୁବିଧା ଅସୁବିଧାକୁ ଲକ୍ଷ୍ୟକରି ବହିର ଉପସ୍ଥାପନାର ଶେଷରୂପ ଅଣାଯାଇଛି ।

ମୋଟାମୋଟି ଭାବରେ ଦେଖିଲେ ପିଲାଙ୍କ ସାଙ୍ଗରେ ସମ୍ପର୍କ ଯୋଡ଼ିବା ପାଇଁ ଏହି ବହିଟି ଅଠାର କାମ ଦେବ । ଅନ୍ୟ ଅର୍ଥରେ, ପିଲାଙ୍କ ସାଙ୍ଗରେ ଏକାଠି ବସି ଏହି କାମଗୁଡ଼ିକ କରିଲେ ପିଲାର ଖୁସି ଓ ବିକାଶରେ ତାହା ବିଶେଷ ସହାୟକ ହେବ । ଆଶାକରୁଛୁ ବିଜ୍ଞାନ କ୍ଲବ, ହସ୍ତକର୍ମ ଶ୍ରେଣୀ, ପ୍ରଦର୍ଶନୀ ପ୍ରସ୍ତୁତି ଆଦିରେ ଏସବୁ ବିଶେଷ ଆଦର ପାଇବ ।

ଏଥିରେ ପିଲା ସହଜରେ ପାଇପାରିଲା ଭଳି ବିଭିନ୍ନ ସାଧାରଣ ଜିନିଷ କାମରେ ଲଗାଯାଇଛି । ପିଲାମାନେ ତ ଏସବୁ ଜିନିଷଗୁଡ଼ିକ ତିଆରି କରିବା ପାଇଁ ବାହାରି ପଡ଼ିବେଣି । ତେବେ ଏଥିରେ ମାତ୍ର ଅଳ୍ପ କେତୋଟି ଜିନିଷ ଉଦାହରଣ ଭାବରେ ଦିଆଯାଇଛି । ଏହାକୁ ଆଧାର କରି ଅନେକ ନୂଆ ନୂଆ ଜିନିଷ ତିଆରିର କଳ୍ପନା କରାଯାଇ ପାରିବ । ସ୍କୁଲ ଛୁଟି ଥିବା ବେଳେ ସମୟ କାଟିବା ପାଇଁ ଏଥିରୁ ଭଲ ଖୋରାକ ମିଳିବ । ଏହିଭଳି କିଛି ନୂଆ ଜିନିଷ ଚିନ୍ତା କରିଥିଲେ ସେ ବିଷୟରେ ଆମ ପାଖକୁ ଲେଖିବାର ଅନୁରୋଧ ।

*ମାର୍ଚ୍ଚ ୨୦୦୫*

*ସୃଜନିକା ପରିବାର*

# ସୂଚୀପତ୍ର

# ଚୁଡ଼ିର ମୟୂର

*ଘରେ ଆମର ଅନେକ ଚୁଡ଼ି ପଡ଼ି ରହିଥାଏ । କେବେ କେବେ ସେଗୁଡ଼ିକ ଭାଙ୍ଗିଗଲେ ମା' ତାକୁ ଫିଙ୍ଗି ଦିଅନ୍ତି । ଏଥର ଭାଙ୍ଗିଗଲେ ଆମେ ସେଗୁଡ଼ିକ ନେଇ ଯିବା ଓ ତାକୁ ସଜାଇ କରି ଗୋଟିଏ ସୁନ୍ଦର ମୟୂର ତିଆରି କରିବା । ଏହାକୁ କାନ୍ଥରେ ଝୁଲାଇ ଘର ସଜାଇପାରିବା ।*

## *କ'ଣ ଦରକାର*

ମୋଟା ଧଳା କାର୍ଡବୋର୍ଡ, ଗୋଟା ଓ ଭଙ୍ଗା ଚୁଡ଼ି, ଅଠା

## *କିପରି କରିବ*

ଗୋଟିଏ ଧଳା କାର୍ଡବୋର୍ଡ ନେଇ ସେଥିରେ ଗୋଟିଏ ମୟୂର ଆଙ୍କିଦିଅ । ଚିତ୍ର ଭଳି ସେଥିରେ ଗୋଟା ଓ ଭଙ୍ଗା ଚୁଡ଼ି ଅଠା ଦେଇ ଲଗାଇଦିଅ । ଏହିଭଳି ଭଙ୍ଗା ଚୁଡ଼ିରେ ଫୁଲ, ସୁନ୍ଦର ଦୃଶ୍ୟ ଓ ଅନ୍ୟ ଚିତ୍ର ବି କରିପାରିବ ।



# ଟୋପି

*ଆମେ କେତେ ପ୍ରକାରର ଟୋପି ଦେଖିଥିବା । ହୋଲିରେ ମଧ୍ୟ ଟୋପି ତିଆରି କରି ପିନ୍ଧିଥିବା । କାଗଜକୁ ଭାଙ୍ଗି ବି କେତେ ରକମର ଟୋପି କରିଥିବା । ଏବେ ସେହିଭଳି ଗୋଟିଏ ଟୋପି ତିଆରି କରି ପିନ୍ଧିବା ଓ ସାଙ୍ଗମାନଙ୍କୁ ଉପହାର ଦେବା ।*

*କ'ଣ ଦରକାର*

ମୋଟା ଡ୍ରଇଙ୍ଗ ସିଟ୍, ରଙ୍ଗୀନ କାଗଜ, ପେନସିଲ, କଇଁଚି, ସ୍କେଲ, ଜ୍ୟାମିତିବାକ୍ସରୁ ରାଉଣ୍ଡର, ଅଠା

*କିପରି କରିବ*



୨୪ x ୧୯ ସେ.ମି. ମାପର ଗୋଟିଏ ମୋଟା ଡ୍ରଇଙ୍ଗ ସିଟ୍ ନେଇ ସେଥିରେ ପାଖ ଚିତ୍ର ଭଳି ଦାଗ ଦିଅ ଓ ଗାର ପକା ଅଂଶକୁ କାଟିଦିଅ । ଏବେ କାଗଜର ଗୋଟିଏ ଗୋଲ ପଟି ମିଳିବ ।



ବାହାର ଗୋଲରୁ ଭିତର ଗୋଲ ଯାଏଁ ଝାଲେରୀ ଭଳି କାଟିଦିଅ ଓ ସେଗୁଡ଼ିକୁ ତଳକୁ ଭାଙ୍ଗିଦିଅ ।

୮ x ୩୦ ସେ.ମି. ମାପର ଆଉ ଗୋଟିଏ ପଟି ନେଇ ଲମ୍ବ ବାଗରେ ଅଧା କରି ଚିହ୍ନ ଦିଅ ।

ଗୋଟିଏ ଅଧାକୁ ଝାଲେରୀ ଭଳି କାଟ । କଟା ହୋଇନଥିବା ଅଂଶକୁ ବଡ଼ ଗୋଲର ଝାଲେରୀରେ ଅଠା ଦେଇ ଲଗାଇଦିଅ । ଝାଲେରୀଗୁଡ଼ିକୁ ବାହାରକୁ ଭାଙ୍ଗିଦିଅ ।





ଏବେ ୩୦ x ୧୯ ସେ.ମି. ମାପର ଗୋଟିଏ ଡ୍ରଇଙ୍ଗ ସିଟ୍ ନେଇ ପାଖ ଚିତ୍ର ଭଳି ଚିହ୍ନ ଦିଅ । ଗାର ପକା ଅଂଶ କାଟି ଦେଇ ମଝିରୁ ବଳାଟି ବାହାର କର ।



ବାହାରକୁ ଝୁଲି ରହିଥିବା ଝାଲେରୀରେ ଏହି ବଳାଟି ଅଠା ଦେଇ ଯୋଡ଼ିଦିଅ । ଟୋପିଟି ତିଆରି ହୋଇଗଲା । ଏବେ ଏହାକୁ ରଙ୍ଗୀନ କାଗଜ ଦେଇ ସଜାଇଦିଅ ।





# ଝୁଲନ୍ତା ପ୍ରଜାପତି

ବଗିଚାରେ ରଙ୍ଗୀନ ପ୍ରଜାପତି ଉଡୁଥିବାର ଦେଖିଲେ ମନ କେତେ ଖୁସି ହୋଇଯାଏ । ସେଗୁଡ଼ିକୁ ଧରି ଆଣି ଘରେ ରଖିବାକୁ ଇଚ୍ଛା ହୁଏ । କିନ୍ତୁ ସେଗୁଡ଼ିକ ତ ଆଣି ହେବନାହିଁ । ଆମେ କାଗଜରେ ରଙ୍ଗୀନ ପ୍ରଜାପତି କରି ଘରେ ଝୁଲାଇ ପାରିବା ।

## କ'ଣ ଦରକାର

ରଙ୍ଗୀନ ଡ୍ରଇଙ୍ଗ ସିଟ୍, ରଙ୍ଗୀନ ମୋଟା କାଗଜ, ଛୁରି, ସୂତା, ସେଲୋଟେପ, ପେନସିଲ, ତିନୋଟି ସରୁ ତାର, ପତଳା ବାଡ଼ି, ଅଠା

## କିପରି କରିବ

ବିଭିନ୍ନ ରଙ୍ଗର ଡ୍ରଇଙ୍ଗ କାଗଜରେ ପ୍ରଜାପତି ଆକୃତି କାଟିଦିଅ । ସେଥିରେ ରଙ୍ଗୀନ କାଗଜ ଲଗାଇ ସଜାଇଦିଅ ।





ଛୁଞ୍ଚି ସହାଯ୍ୟରେ ପ୍ରଜାପତିର ଉପର ପଟୁ ସୂତା ଗଳାଇଦିଅ । ତଳେ ଗୋଟିଏ ଗଣ୍ଠି ପକାଇଦିଅ ଯେପରି ପ୍ରଜାପତିଟି ଖସି ଯିବନାହିଁ । ତଳେ ସେଲୋଟେପ ଲଗାଇଦିଅ । ଉପର ପଟେ ଲମ୍ବା ସୂତା ଛାଡ଼ିଦିଅ । ପତଳା ତାରକୁ ତଳ ଚିତ୍ର ଭଳି ବଙ୍କାଇଦିଅ । ଏହିଭଳି ତିନୋଟି ତାର ବଙ୍କାଇଦିଅ ।





ଏବେ ତାର ତିନୋଟିରେ ପ୍ରଜାପତିର ଉପର ପଟେ ଥିବା ସୂତାରେ ଚିତ୍ର ଭଳି ଝୁଲାଇଦିଅ । ପ୍ରତି ପ୍ରଜାପତିକୁ ଅଲଗା ଲମ୍ବାର ସୂତାରେ ଝୁଲାଅ । ଉପର ପଟେ ଗୋଟିଏ ସରୁ କାଠ ବାଡ଼ି ଲଗାଇ ଉପର ତାରଟି ସେଥିରେ ଝୁଲାଇଦିଅ । ଝୁଲନ୍ତା ପ୍ରଜାପତି ହୋଇଗଲା ।



# କାଗଜ ଟୁକୁଡ଼ାରୁ ଚିତ୍ର

*ଆମେ ପେନସିଲ, ରଙ୍ଗ ପେନସିଲ, କ୍ରେୟନ, ତୁଳୀରେ ରଙ୍ଗ ଦେଇ ଅନେକ ଚିତ୍ର ଆଙ୍କିଥିବା । ଏଭଳି ଜିନିଷ ତିଆରି କରିବା ବେଳେ ଅନେକ ରଙ୍ଗୀନ କାଗଜ ଟୁକୁଡ଼ା ଆମ ପାଖରେ ବଳି ଯାଉଥିବ । ସେଗୁଡ଼ିକ ଲଗାଇ ବି ସୁନ୍ଦର ଚିତ୍ର କରିହେବ ।*

## *କ'ଣ ଦରକାର*

ଧଳା ମୋଟା କାର୍ଡ, ରଙ୍ଗୀନ କାଗଜ, ବ୍ଲେଡ ବା ଛୁରୀ, କଇଁଚି, ପେନସିଲ, କଳା କାଗଜ, ଅଠା



## *କିପରି କରିବ*

ଚିତ୍ରଟି ପ୍ରଥମେ ଧଳା ମୋଟା କାର୍ଡ ଉପରେ ଆଙ୍କିଦିଅ । ପାଖରେ ଦିଆ ଯାଇଥିବା ଚିତ୍ର ଭଳି ମଧ୍ୟ ଆଙ୍କିପାରିବ ।

ରଙ୍ଗୀନ କାଗଜକୁ ଛୋଟ ଛୋଟ ପଟିରେ କାଟିଦିଅ ଓ ସେଗୁଡ଼ିକୁ ପୁଣି ଛୋଟ ଛୋଟ ଚାରିକୋଣିଆ ଖଣ୍ଡ କରି କାଟ । ସବୁଗୁଡ଼ିକ ଏକା



ଆକାରର ହେବା ଦରକାର ନାହିଁ ।



ଏବେ ଅଠା ଦେଇ ଚିତ୍ରରେ ରଙ୍ଗୀନ କାଗଜ ଲଗାଇଦିଅ । ଦରକାର ହେଲେ ଚାରିକୋଣିଆ କାଗଜକୁ ଚିତ୍ରର ଆକାର ଅନୁସାରେ କାଟିଦିଅ ।

ଏବେ ଚିତ୍ରଟି ହୋଇଗଲା । ଧଳା କାର୍ଡ ଠାରୁ ଟିକିଏ ବଡ଼ ଆକାରର ଗୋଟିଏ କଳା କାଗଜ ନିଅ । ଚିତ୍ରଟିକୁ କଳା କାଗଜରେ ମଝିରେ ଅଠା ଦେଇ ଲଗାଇଦିଅ । ଚାରିପଟେ ରଙ୍ଗୀନ କାଗଜର ପଟି ଲଗାଇ ସଜାଇଦିଅ ।



# ପେନସିଲ ଟୋପି

ପାଠ ପଢ଼ୁଆ ପିଲାର ପେନସିଲଟିଏ ବଡ଼ ସାଥି । ଆମେ ଯେମିତି ଟୋପିଟିଏ ପିନ୍ଧିଲେ ଖୁସି ହୋଇଯାଏ, ଆମ ପେନସିଲ ବି ସେମିତି ଟୋପିଟିଏ ପିନ୍ଧିଲେ ଖୁସି ହୋଇଯିବ । ଏବେ ଆମେ ଆମ ପେନସିଲ ପାଇଁ ଗୋଟିଏ ମୁଣ୍ଡି ବା ଟୋପି ତିଆରି କରିବା ।

### କ'ଣ ଦରକାର

ପେନସିଲ, ବ୍ଲେଡ ବା ପେନସିଲ କଟା କଳ, ଯେ କୌଣସି ଦୁଇଟି ରଙ୍ଗର ରୁମୁରୁମିଆ କନା, ରଙ୍ଗୀନ କାଗଜ, ଛୋଟ ମାଳି, ଅଠା

### କିପରି କରିବ

୩୩ ସେ.ମି. ମାପର ଗୋଟିଏ ରୁମୁରୁମିଆ କନା ନେଇ ତାକୁ ପେନସିଲ ଚାରିପଟେ ଗୁଡ଼ାଇ





ଗୋଟିଏ ଗୋଲ ତିଆରି କର । ଏହାର ଗୋଟିଏ ମୁଣ୍ଡ ଅଠା ଦେଇ ବନ୍ଦ କରିଦିଅ । ଏବେ ଅଧ ସେ.ମି. ବର୍ଗର ଆଉ ଗୋଟିଏ ରଙ୍ଗର ରୁମୁରୁମିଆ କନା ନେଇ ପ୍ରଥମ କନା ଉପରେ ଟୋପି ଭଳି ଲଗାଇଦିଅ ।

ବିଭିନ୍ନ ରଙ୍ଗର କାଗଜ ନେଇ ଛୋଟ ଛୋଟ କରି କାଟ ଓ ଆଖି, ନାକ, ପାଟି ଆଦି କରି ଅଠା ଦେଇ ଲଗାଇଦିଅ । ଦରକାର ପଡ଼ିଲେ ଛୋଟ ମାଳି ଦେଇ ଆଖିକୁ ସଜାଇପାରିବ । ସିଲେଇ ଜିନିଷ ମିଳୁଥିବା ଦୋକାନରେ କଣ୍ଢେଇ ଆଖି ମିଳେ । ତାକୁ ମଧ୍ୟ ଆଣି ଲଗାଇପାରିବ । ଏହିପରି କେତେଗୁଡ଼ିଏ ଟୋପି କରି ପେନସିଲ ଉପରେ ଲଗାଇ ସାଙ୍ଗଙ୍କୁ ଉପହାର ଦିଅ ।





# ମୁଣି

କୌଣସି ଜିନିଷ ନେବା ଆଣିବା କରିବା ପାଇଁ ଆମର ମୁଣିଟିଏ ଦରକାର ହୋଇଥାଏ । ଆମେ ଜନା, ଅଖା, ପ୍ଲାଷ୍ଟିକରେ ତିଆରି ମୁଣି ବ୍ୟବହାର କରିଥାଏ । ଏବେ କାଗଜରେ ଗୋଟିଏ ମୁଣି ତିଆରି କରି ସେଥିରେ ଖାଇବା ଡବା ସ୍କୁଲକୁ ନେଇପାରିବା ।

*କ'ଣ ଦରକାର*

କାର୍ଡବୋର୍ଡ, ଫିତା, ରଙ୍ଗୀନ କାଗଜ, ପୁରୁଣା ପତ୍ରିକା, କଇଁଚି, ଅଠା, ବ୍ଲେଡ ବା ଛୁରୀ

*କିପରି କରିବ*

୫୭ x ୩୦ ସେ.ମି. ମାପର ଗୋଟିଏ କାର୍ଡବୋର୍ଡ ନେଇ ତଳ ଚିତ୍ର ଭଳି ଦାଗ ଦିଅ । ଗାର ପଡ଼ିଥିବା ଅଂଶକୁ କାଟିଦିଅ ଓ - - - ଗାର



ଉପରେ ବ୍ଲେଡ ବା ଛୁରୀରେ ହାଲୁକା ଭାବରେ ଦାଗ ଦିଅ ।

ଏବେ ସରୁ ଗାର ଉପରେ ଆଗକୁ ଓ ମୋଟା ଗାର ଉପରେ ପଛକୁ ଭାଙ୍ଗିଦିଅ ।

ତଳ ଚାରିଖଣ୍ଡକୁ ଯୋଡ଼ିଦେଇ ମୁଣି ତିଆରି କର । ମୁଣିଟିରେ ରଙ୍ଗୀନ କାଗଜ ମଡ଼ାଇଦିଅ । ଉପର ଖୋଲା ପଟରେ ଫିତା ଲଗାଇ ଦିଅ । ତାହା ହାଣ୍ଡଲର କାମ ଦେବ ।



ପୁରୁଣା ପତ୍ରିକାରୁ ଚିତ୍ର କାଟି ମୁଣିରେ ଲଗାଇଦିଅ ଓ ତା'ର ଚାରିକଡ଼େ ରଙ୍ଗୀନ କାଗଜ ଲଗାଇ ସଜାଇଦିଅ ।

# ବତକ କଲମ ରଖା

*କଲମ ପେନସିଲ ଆମେ ଡବାରେ ରଖିଥାଏ । କାଗଜ ମୁଣିରେ ବି ରଖିପାରିବା । ସେହିଭଳି ଗୋଟିଏ ବତକ ତିଆରି କରି ତା' ପିଠିରେ ଗୋଟିଏ ଖୋଳ କରି ସେଥିରେ ଆମର କଲମ, ପେନସିଲ, ରଙ୍ଗ ତୂଳୀ ରଖିପାରିବା ।*

### କ'ଣ ଦରକାର

କାର୍ଡବୋର୍ଡ, ରଙ୍ଗୀନ କାଗଜ, ମାଟିଆ କାଗଜ, ଜ୍ୟାମିତିବାକ୍ସର ରାଉଣ୍ଡର, ବ୍ଲେଡ, କଇଁଚି, ପେନସିଲ, ଛୋଟ ଚିତ୍ର, ଅଠା

### କିପରି କରିବ

ବତକର ଦେହ

୧୪.୫ X ୧୮ ସେ.ମି. ମାପର ଗୋଟିଏ କାର୍ଡବୋର୍ଡ ନେଇ ଚିତ୍ର ଭଳି ସେଥିରେ ଦାଗ ଦିଅ ଓ କାଟି ବତକର ଦେହ ବାହାର କର । ସେହିଭଳି ମୁଣ୍ଡ, ଥଣ୍ଟ, ଡେଣା ଆଦି କାଟ ।












ଏବେ ଦେହରେ ମୁଣ୍ଡ, ଥଣ୍ଟ ଓ ଡେଣାଦୁଇଟିକୁ ଅଠା ଦେଇ ଯୋଡ଼ିଦିଅ ଓ ତୁମ ପସନ୍ଦ ଅନୁସାରେ ବିଭିନ୍ନ ରଙ୍ଗୀନ କାଗଜ ମଡ଼ାଇଦିଅ । ରଙ୍ଗୀନ କାଗଜରୁ ଗୋଟିଏ ଆଖି କାଟି ଲଗାଇଦିଅ ।

ଏବେ କଲମ ରଖା ତିଆରି କରିବା । ଏଥିପାଇଁ ୧୮.୫ x ୧୪.୫ ସେ.ମି. ମାପର ଗୋଟିଏ କାର୍ଡବୋର୍ଡ ନେଇ ଚିତ୍ରରେ ଦେଖା ଯାଇଥିବା ମାପ ଅନୁସାରେ ସେଥିରେ ଦାଗ ଦିଅ ଓ ଦାଗ ଉପରେ ହାଲୁକା ଭାବରେ ବ୍ଲେଡ ଚଲାଇଦିଅ । ଦାଗ ଉପରେ ଭାଙ୍ଗିଦିଅ ଓ ଭାଙ୍ଗରେ ମାଟିଆ କାଗଜ ଲଗାଇଦିଅ । ଏବେ ଏହି କଲମରଖା ବାକ୍ସକୁ ବତକର ପିଠିରେ ଲଗାଇଦିଅ । ଫଟୋ ବନ୍ଧେଇ ଭଳି ଏହାର ମଧ୍ୟ ଢିରା ତିଆରି କରି ଟେବୁଲ ଉପରେ ରଖ ।





# ସୁନ୍ଦର ଚିତ୍ର

*ଆମେ ଆଗରୁ କାଗଜ ଟୁକୁଡ଼ା ନେଇ ଚିତ୍ର କରିଥିଲେ । କିନ୍ତୁ ସବୁଦିନ ତ ଆମେ ପେନସିଲ କାଟୁଛେ । ସେଥିରୁ ଯେଉଁ ଛେଲି ବାହାରେ ତାକୁ ଫିଙ୍ଗି ଦେଉଛେ । ସେଥିରେ କିନ୍ତୁ ସୁନ୍ଦର ଚିତ୍ର କରିଦେବ । ଏବେ ସେହିଭଳି ଗୋଟିଏ ଚିତ୍ର କରିବା ।*

### *କ'ଣ ଦରକାର*

ପେନସିଲ, ପେନସିଲ କଟା କଳ, ରଙ୍ଗୀନ କାଗଜ, ଅଠା

### *କିପରି କରିବ*

ପେନସିଲ କଟା କଳରେ ଗୋଟିଏ ପେନସିଲ କାଟ । କାଟିଲା ବେଳେ ସାବଧାନ ହୋଇ କାଟିବ ଯେପରି ତା'ର ଛେଲିଗୁଡ଼ା ଛିଣ୍ଡି ନଯାଇ ଲମ୍ବା ଲମ୍ବା ବାହାରିବ । ଏହାର ଧାରରେ ପେନସିଲର ରଙ୍ଗ ଅନୁସାରେ ଗୋଟିଏ ସରୁ ଗାର ପଡ଼ିଥିବ । ଏଗୁଡ଼ିକ ଗୋଟିଏ ଜାଗାରେ ସାଇତି ରଖ ।



ଗୋଟିଏ ରଙ୍ଗୀନ କାଗଜ ନେଇ ସେଥିରେ ଗୋଟିଏ ଚିତ୍ର ଆଙ୍କ । ତଳେ ଦିଆ ଯାଇଥିବା ଚିତ୍ର ବି ଆଙ୍କି ପାରିବ । ଏବେ ପେନସିଲର ଛେଲିଗୁଡ଼ିକ ଚିତ୍ରରେ ଲଗାଇଦିଅ । ଲଗାଇଲା ବେଳେ ସାବଧାନ ହେବ ଯେପରି ଲମ୍ବା ଛେଲି ଛିଣ୍ଡି ନଯାଏ । ଗୋଟିଏ ପରସ୍ତ ଉପରେ ଆଉ ଗୋଟିଏ ପରସ୍ତ ଲଗାଅ ଯେପରି ଛେଲିର ଧାରରେ ଥିବା ସରୁ ଗାର ମଧ୍ୟ ସଜାଇ ହୋଇ ରହିବ ।



ଚିତ୍ରରେ ଅନ୍ୟ ରଙ୍ଗର କାଗଜ ଲଗାଇ ସଜାଇଦିଅ । ଏବେ ସୁନ୍ଦର ଚିତ୍ର ହୋଇଗଲା । ଏହାର ଚାରିପଟେ ଅନ୍ୟ ଗୋଟିଏ ରଙ୍ଗର ସରୁ ପଟି ଦେଇ ଘର ସଜାଇବା ପାଇଁ କାଛରେ ଟାଙ୍ଗି ପାରିବ ବା ସାଙ୍ଗଙ୍କୁ ଉପହାର ଦେଇପାରିବ ।



# ଟର୍କି ଚଢ଼େଇ

*ଆମ ଚାରିପାଖର କେତେ ରକମର ଚଢ଼େଇ ଅଛନ୍ତି । ସେମାନଙ୍କୁ ଦେଖିବାକୁ ବହୁତ ମଜା ଲାଗେ । ସେହିପରି ଗୋଟିଏ ଚଢ଼େଇ ହେଉଛି ଟର୍କି । ଆମେ କାଗଜରେ ଗୋଟିଏ ଟର୍କି ଚଢ଼େଇ କରି ଘରେ ରଖିପାରିବା ।*

*କ'ଣ ଦରକାର*

ପୁରୁଣା ଖବର କାଗଜ, ମୋଟା କାର୍ଡ, ଅଠା

*କିପରି କରିବ*



ଗୋଟିଏ ମୋଟା କାର୍ଡ ନେଇ ତାକୁ ଲମ୍ବ ବାଗରେ ମଝିରୁ ଅଧା କରି ଭାଙ୍ଗିଦିଅ ।

ଗୋଟିଏ ଛୋଟ ପିଲାର ହାତକୁ ଖବର କାଗଜ ଉପରେ ରଖ । ତା'ର ହାତର ଚାରିପଟେ ଗୋଟିଏ ଗାର ପକାଇଦିଅ ।



ବୁଢ଼ା ଆଙ୍ଗୁଠି ଉପରେ ଗୋଟିଏ ମୁନିଆ ଥଣ୍ଟ ଓ ତଳେ ଗୋଟିଏ ଅଙ୍କାବଙ୍କା ଗାର ପକାଇଦିଅ । ଏହା ଟର୍କିର ବେକ ତଳ ଚମ ହେବ ।

ଆଙ୍ଗୁଠି ଗାରର ଧାରରେ କାଟିଦିଅ ।

ବାକି ଆଙ୍ଗୁଠିରେ ଗୋଟିଏ ପେନସିଲ ଗୁଡ଼ାଇଦିଅ । ଏଗୁଡ଼ିକ ମୋଡ଼ି ହୋଇ ରହିବ । ଏହା ଟର୍କିର ମୋଡି ହୋଇ ରହୁଥିବା ଲାଞ୍ଜର ପର ଭଳି ରହିବ ।



ମୋଡ଼ା ତଳକୁ ଟିକିଏ ଅଠା ଲଗାଇଦିଅ ଯେପରି ମୋଡ଼ାଟି ଖୋଲି ନଯାଏ ।



ବୁଢ଼ା ଆଙ୍ଗୁଠିର ମୁଣ୍ଡକୁ ଲାଲ ଓ ଥଣ୍ଟକୁ ହଳଦିଆ ରଙ୍ଗ ଦିଅ । ଏବେ ଟର୍କି ଚଢ଼େଇକୁ ମୋଟା କାର୍ଡର ଗୋଟିଏ ପଟେ ଲଗାଇଦିଅ । ତଳେ ତା'ର ଗୋଡ଼ ଆଙ୍କିଦିଅ । ଉପରେ ମେଘ ଆଙ୍କ ଓ ତଳେ ଗୋଟିଏ ଗାର ପକାଇ ତା' ତଳକୁ ମାଟିଆ-ହଳଦିଆ ରଙ୍ଗ ଦିଅ । ଏବେ ତୁମର କାର୍ଡ ହୋଇଗଲା ।





# ଝିଙ୍କ

*ଆମ ଚାରିପାଖରେ କେତେ ଜୀବଜନ୍ତୁ ଅଛନ୍ତି । ସେ ଭିତରୁ ଝିଙ୍କ ଗୋଟିଏ । ଝିଙ୍କ ତା'ର ମୁନିଆଁ ଥଣ୍ଟା ପାଇଁ ବେଶ୍ ଜଣାଶୁଣା । ଆମେ ଏବେ କାଗଜର ଗୋଟିଏ ଝିଙ୍କ ତିଆରି କରି କାର୍ଡଟିଏ କରିବା ।*

*କ'ଣ ଦରକାର*

ବିଭିନ୍ନ ରଙ୍ଗର କନା ପଟି, ମୋଟା କାର୍ଡ, ଅଠା



*କିପରି କରିବ*

ଗୋଟିଏ ଆୟତାକାର ମୋଟା କାର୍ଡ ନେଇ ତାକୁ ଲମ୍ବା ବାଗରେ ଅଧା କରି ଭାଙ୍ଗିଦିଅ ।

କାର୍ଡର ଉପର ପଟେ ଝିଙ୍କର ଚିତ୍ର ଆଙ୍କ ।

ପ୍ରତି କନା ପଟିରେ ଭଲ କରି ଅଠା ଲଗାଇଦିଅ ଓ ସେଗୁଡ଼ିକୁ ଝିଙ୍କର ପିଠି ପଟେ ଲଗାଇଦିଅ । ଏଗୁଡ଼ିକ ଝିଙ୍କର



ଲାଞ୍ଜ ହୋଇଯିବ । ବଡ଼ ଆକାରର କନା ପଟି ଉପରେ ଛୋଟ ପଟି ଲଗାଅ ।

ଫୁଲ ଓ ଅନ୍ୟ ଚିତ୍ର କରି କାର୍ଡକୁ ସଜାଇଦିଅ । ଭିତର ପଟେ ତୁମ ମନ ପସନ୍ଦର ବାର୍ତ୍ତାଟିଏ ଲେଖି ତୁମ ସାଙ୍ଗ ପାଖକୁ ପଠାଇଦିଅ ।





# ଟ୍ୟୁବରେ ଚିତ୍ର

*ପେନସିଲ, ରଙ୍ଗ ତୂଳୀ, କ୍ରେୟନ ସାହାଯ୍ୟରେ ଆମେ ଅନେକ ଚିତ୍ର କରିଥିବା । ଏବେ କିନ୍ତୁ ଟ୍ୟୁବ ଓ ରଙ୍ଗ ସାହାଯ୍ୟରେ ଗୋଟିଏ ନୂଆ ପ୍ରକାରର ଚିତ୍ର କରିବା ।*

*କ'ଣ ଦରକାର*

ଡ୍ରଇଙ୍ଗ ସିଟ୍, କାର୍ଡବୋର୍ଡ, ପେନସିଲ, ଟ୍ୟୁବରେ ମିଳୁଥିବା ରଙ୍ଗ, ଅଠା



*କିପରି କରିବ*

ଆୟତାକାର କାର୍ଡବୋର୍ଡ ଖଣ୍ଡେ ଉପରେ ତା'ଠାରୁ ଟିକିଏ ଛୋଟ ଖଣ୍ଡେ ଡ୍ରଇଙ୍ଗ ସିଟ୍ ଅଠା ଦେଇ ଲଗାଇଦିଅ ଓ ତା' ଉପରେ ପେନସିଲରେ ହାଲୁକା ଭାବରେ ଗୋଟିଏ ଚିତ୍ର କର ।



ଯେକୌଣସି ରଙ୍ଗର ପାଣିରଙ୍ଗର ଟ୍ୟୁବ ନେଇ ଧୀରେ ଧୀରେ ଚିପି ରଙ୍ଗ

ବାହାର କର ଓ ଚିତ୍ର ଉପରେ ଲଗାଇଦିଅ । ବିନ୍ଦୁ ଦେବା ପାଇଁ କେବଳ ଛୁଆଁଇ ଦେଲେ ହେବ ।



ଟ୍ୟୁବ ସବୁବେଳେ ସମାନ ଜୋରରେ ଚିପିବ । ନହେଲେ କେଉଁଠି ମୋଟା ତ କେଉଁଠି ପତଳା ହୋଇଯିବ ଓ ଭଲ ଦେଖାଯିବ ନାହିଁ । ଏହିପରି ବିଭିନ୍ନ ରଙ୍ଗର ଟ୍ୟୁବ ନେଇ ଚିତ୍ରଟି ପୂରା କର ।







# ଅଭିନନ୍ଦନ ପତ୍ର

*ନୂଆ ବର୍ଷ, ସାଙ୍ଗର ଜନ୍ମଦିନ ଆଦି ଦିନମାନଙ୍କରେ ଆମେ ମନର କଥା ଲେଖି ଅଭିନନ୍ଦନ ପତ୍ର ଦେଇଥାଏ । ସେସବୁ ଆମେ କିଣିଥାଏ । କିନ୍ତୁ ହାତରେ ତିଆରି କରି ଦେଲେ ତା'ର ମୂଲ୍ୟ ଅନେକ ବେଶୀ ହୋଇଥାଏ । ଏବେ ଆମେ ସେହିଭଳି ଗୋଟିଏ ଅଭିନନ୍ଦନ ପତ୍ର ତିଆରି କରିବା ।*

## *କ'ଣ ଦରକାର*

ମୋଟା କାର୍ଡ, କାଗଜ କଣା କରିବା ଯନ୍ତ୍ର, ରଙ୍ଗ, ରଙ୍ଗୀନ କାଗଜ, ଅଠା

## *କିପରି କରିବ*

୨୦ x ୧୨ ସେ.ମି. ମାପର ଗୋଟିଏ ମୋଟା କାର୍ଡ ନେଇ ତାକୁ ଅଧା କର ଯେପରି ୧୨ x ୧୦ ସେ.ମି. ମାପର ଗୋଟିଏ କାର୍ଡ ମିଳିବ ।



ବିଭିନ୍ନ ରଙ୍ଗର ରଙ୍ଗୀନ କାଗଜ ନେଇ କାଗଜ କଣା କରିବା ଯନ୍ତ୍ରରେ ସେଥିରେ କଣା କର । ଅନେକଗୁଡ଼ିଏ ଛୋଟ ଛୋଟ ଗୋଲ ଗୋଲ ରଙ୍ଗୀନ

କାଗଜ ମିଳିବ । ଅଲଗା ରଙ୍ଗର କାଗଜକୁ ବାଛି ଅଲଗା କରି ରଖ ।



ଏବେ କାର୍ଡ ଉପରେ ଗୋଟିଏ ଡାଳର ଚିତ୍ର ଆଙ୍କ । ସେହି ଡାଳରେ ବିଭିନ୍ନ ରଙ୍ଗର ଗୋଲ କାଗଜକୁ ଅଠା ଦେଇ ଲଗାଇ ସଜାଇଦିଅ । ରଙ୍ଗୀନ କାଗଜ ଜାଗାରେ ବଜାରରେ ମିଳୁଥିବା ବିଭିନ୍ନ ଆକାର ଓ ରଙ୍ଗର ଟିପା ବା ଝିକି ମଧ୍ୟ ବ୍ୟବହାର କରିପାରିବ । ଏବେ କାର୍ଡ ଭିତରେ ତୁମର ସନ୍ଦେଶ ଲେଖି ସାଙ୍ଗ ପାଖକୁ ପଠାଇଦିଅ ।



# ଖାଇବା ଦାନାରୁ ଚିତ୍ର

*ଆମ ରୋଷେଇ ଘରେ ଅନେକ ଜିନିଷ ରହିଛି । ସେଗୁଡ଼ିକ ପୁଣି ଅନେକ ରଙ୍ଗର ଓ ଆକାରର । ସେଗୁଡ଼ିକୁ ଆମେ କେବଳ ଖାଇବା ଜିନିଷ ଭାବରେ ଜାଣିଛେ । କିନ୍ତୁ ସେଗୁଡ଼ିକ ଲଗାଇ ଆମେ ସୁନ୍ଦର ଚିତ୍ର ବି କରିପାରିବା । ସେହିଭଳି ବିଭିନ୍ନ ଚାଉଳ, ଡାଲି ଓ ଶସ୍ୟ ଲଗାଇ ଗୋଟିଏ ଚିତ୍ର କରିବା ।*

### *କ'ଣ ଦରକାର*

ଡ୍ରଇଙ୍ଗ ସିଟ୍, ପେନସିଲ, ବିଭିନ୍ନ ଡାଲି (ହରଡ଼, ମୁଗ, ବିରି, ମସୁର, ରାଜମା, ମଟର ଆଦି), ଚାଉଳ, ସାଗୁଦାନା, ଅଠା

### *କିପରି କରିବ*

୨୦ x ୧୨ ସେ.ମି. ମାପର ଗୋଟିଏ ଡ୍ରଇଙ୍ଗ ସିଟ୍ ନେଇ ତାକୁ ଅଧା କର ଯେପରି ୧୨ x ୧୦ ସେ.ମି. ମାପର ଗୋଟିଏ କାର୍ଡ ମିଳିବ ।



ଭଙ୍ଗା ହୋଇଥିବା ଡ୍ରଇଙ୍ଗ ସିଟ୍‌ର ଉପର ପଟେ ପେନସିଲରେ ଚିତ୍ରଟିଏ ଆଙ୍କ । ଏଠାରେ ଗୋଟିଏ ଘୋଡ଼ା ଆଙ୍କି ଚିତ୍ର କର ।

ଏବେ ବିଭିନ୍ନ ଡାଲି ଓ ଶସ୍ୟକୁ ଅଠା ଦେଇ ଲଗାଅ । ଘୋଡ଼ାର ଦେହରେ ମୁଗଡ଼ାଲି ଲଗାଅ । ପେନସିଲରେ ଅଙ୍କା ଯାଇଥିବା ଚିତ୍ରର ଧାରରେ ଗୋଟା ବିରି, ଲଗାମରେ ମସୁର ଡାଲି, ଖୁରାରେ ବିରି, ଲାଞ୍ଜରେ ରାଜମା, ପୁରା କାଗଜରେ ସାଗୁଦାନା ଆଦି ବିଭିନ୍ନ ରଙ୍ଗ ଦେଇ ସଜାଇଦିଅ । ଏବେ ଭିତର ପୃଷ୍ଠାରେ କିଛି ଲେଖି ସାଙ୍ଗ ପାଖକୁ ପଠାଇଦିଅ ।





# ଖଡ଼ିକା କାଠିରେ ଘୋଡ଼ା

*ଆଗରୁ ଆମେ ରୋଷେଇ ଘରର ବିଭିନ୍ନ ଡାଲି ନେଇ ଗୋଟିଏ ଘୋଡ଼ା ତିଆରି କରିଥିଲେ । ଏବେ ଘରର ଆଉ ଗୋଟିଏ ଜିନିଷ ନେଇ ଘୋଡ଼ା ତିଆରି କରିବା । ଖଡ଼ିକା ଝାଡ଼ୁ ସମସ୍ତଙ୍କ ଘରେ ଥିବ । କିଛିଦିନ ପରେ ସେଗୁଡ଼ିକ ଛିଣ୍ଡିଯାଇ ମୁଣ୍ଡା ହୋଇଗଲେ ସେଥିରେ ଝାଡ଼ୁ ମାରିବା ସୁବିଧା ହୁଏନାହିଁ । ସେହିଭଳି ଗୋଟିଏ ମୁଣ୍ଡା ଖଡ଼ିକା ଝାଡ଼ୁରେ ଆମେ ଚିତ୍ର କରିବା ।*

*କ'ଣ ଦରକାର*

ମୋଟା କାର୍ଡ, ଖଡ଼ିକା ଝାଡ଼ୁ, ସ୍କେଚ କଲମ, ଛୁରୀ ବା ବ୍ଲେଡ, ଅଠା

*କିପରି କରିବ*

୨୦ x ୧୨ ସେ.ମି. ମାପର ଗୋଟିଏ ଡ୍ରଇଙ୍ଗ ସିଟ୍ ନେଇ ତାକୁ ଅଧା କର ଯେପରି ୧୨ x ୧୦ ସେ.ମି. ମାପର ଗୋଟିଏ କାର୍ଡ ମିଳିବ ।



ଭଙ୍ଗା ହୋଇଥିବା ଡ୍ରଇଙ୍ଗ ସିଟ୍‌ର ଉପର ପଟେ ପେନସିଲରେ ଘୋଡ଼ା ଚିତ୍ରଟିଏ ଆଙ୍କ ।

ଖଡ଼ିକା କାଠିକୁ ଧୋଇ ସଫା କରି ରଖ । ସେସବୁକୁ ବିଭିନ୍ନ ଲମ୍ବାରେ କାଟିଦିଅ ।



ଏବେ ତଳ ଚିତ୍ରରେ ଦେଖା ଯାଇଥିବା ଭଳି ବିଭିନ୍ନ ଲମ୍ବାର ଖଡ଼ିକା କାଠିକୁ ଅଠା ଦେଇ ଲଗାଇଦିଅ । ତଳେ ସବୁଜ ରଙ୍ଗର ସ୍କେଚ କଲମରେ ଘାସ ଆଙ୍କିଦିଅ ।



# ଚା କେଟ୍‌ଲୀ

*ଶୀତଦିନେ ସକାଳୁ ଗରମ ଚା' କପେ ପିଇଦେଲେ ପୂରା ସତେଜ ଲାଗେ । କାମ କରିବାକୁ ଫୁର୍ତ୍ତି ଆସେ । ଆମେ ଏବେ କାଗଜର ଗୋଟିଏ ଚା କେଟଲୀ ତିଆରି କରିବା । ଏଥିରେ ଅବଶ୍ୟ ଆମେ ଚା' ରଖିପାରିବା ନାହିଁ ।*

## *କ'ଣ ଦରକାର*

କାର୍ଡବୋର୍ଡ, ରଙ୍ଗୀନ କାଗଜ, ଡ୍ରଇଙ୍ଗ ସିଟ୍, ମାଟିଆ କାଗଜ, ବ୍ଲେଡ ବା ଛୁରୀ, ସ୍କେଲ, କଇଁଚି, ଅଠା

## *କିପରି କରିବ*

କେଟଲୀର ତଳ

୧୨ x ୧୨ ସେ.ମି. ମାପର ଗୋଟିଏ କାର୍ଡବୋର୍ଡ ନେଇ ପାଖ ଚିତ୍ର ଭଳି ଚିହ୍ନ ଦିଅ ଓ ଗାଢ଼ ରଙ୍ଗ ହୋଇଥିବା ଅଂଶ କାଟିଦିଅ ।

- - - ଗାର ଉପରେ ହାଲୁକା ଭାବରେ ବ୍ଲେଡ ବା ଛୁରୀ ଚଲାଇ ତାକୁ ଭାଙ୍ଗିଦିଅ ।



ଭଙ୍ଗା ଜାଗାରେ ମାଟିଆ କାଗଜ ଲଗାଇଦିଅ । ଉପରେ ରଙ୍ଗୀନ କାଗଜ ମଡ଼ାଇ ସଜାଇଦିଅ ।




## ଦେହ

ଚାରୋଟି ୧୨ x ୧୭ ସେ.ମି. ମାପର କାର୍ଡବୋର୍ଡ ନିଅ ଓ ପାଖ ଚିତ୍ର ଭଳି ଚିହ୍ନ ଦିଅ । ଗାର ପଡ଼ିଥିବା ଅଂଶ କାଟିଦିଅ । ଚିତ୍ରରେ ଦେଖାହେଲା ଭଳି ଚାରି ଖଣ୍ଡକୁ ସଜାଇ ରଖ । ମାଟିଆ କାଗଜ ପଟି ଦେଇ ଏଗୁଡ଼ିକୁ ଯୋଡ଼ିଦିଅ । ଏପରେ ରଙ୍ଗୀନ କାଗଜ ମଡ଼ାଇଦିଅ । ତଳ ଖଣ୍ଡଟିରେ ଏହାକୁ ଯୋଡ଼ିଦିଅ ।






## ଢାଙ୍କୁଣୀ

୧୫ x ୧୫ ସେ.ମି. ମାପର ଗୋଟିଏ ଡ୍ରଇଙ୍ଗ ସିଟ୍ ନେଇ ସେଥିରେ ଚିତ୍ର ଭଳି ଚିହ୍ନ ଦିଅ । ଗାଢ଼ ରଙ୍ଗର ଗାରରେ କାଟିଦିଅ ଓ - - - ଗାରରେ ଭାଙ୍ଗିଦିଅ । ରଙ୍ଗୀନ କାଗଜ

ମଡ଼ାଇ ସାରିବା ପରେ ଉପରେ କାଗଜର ଗୋଲଟିଏ କରି ଲଗାଇଦିଅ ।

### କେଟଲୀ ମୁହଁ

୧୩ x ୧୫ ସେ.ମି. ମାପର ଗୋଟିଏ ଡ୍ରଇଙ୍ଗ ସିଟ୍ ନିଅ । ଚିତ୍ର ଭଳି ଚିହ୍ନ ଦେଇ ଗାଢ଼ ଅଂଶତକ କାଟିଦିଅ ଓ - - - ଗାର ଉପରେ ଭାଙ୍ଗିଦିଅ । କେଟଲୀର ଗୋଟିଏ ପଟେ ଅଠା ଦେଇ ଲଗାଇଦିଅ ।




### ହାଣ୍ଡଲ

୧୫ x ୧୫ ସେ.ମି. ମାପର ଡ୍ରଇଙ୍ଗ ସିଟ୍ ନେଇ ତା'ର ଦୁଇ ଧାରରେ ଅଠା ଲଗାଇ କେଟଲୀର ଗୋଟିଏ ପଟେ (ମୁହଁର ବିପରୀତ ପଟରେ) ଲଗାଇଦିଅ । ଏବେ ରଙ୍ଗୀନ କାଗଜରେ ଆଖି, ନାକ ଓ ପାଟି ଆଙ୍କି କେଟଲୀରେ ଲଗାଇଦିଅ ।



# ଚିତ୍ର ଧନ୍ଦା

*ଗୋଟିଏ ଚିତ୍ରକୁ କେତେ ଖଣ୍ଡ କରି କାଟି ପୁଣି ଯୋଡ଼ି ସେହି ଚିତ୍ର ତିଆରି କରିବାର ଖେଳ ଆଗରୁ ଖେଳିଥିବା । ଏବେ ସେହିଭଳି ଗୋଟିଏ ଚିତ୍ର ଧନ୍ଦା ତିଆରି କରିବା ।*

*କ'ଣ ଦରକାର*

ଲାଲ ଡ୍ରଇଙ୍ଗ ସିଟ୍, ପେନସିଲ, ଛୁରୀ ବା ବ୍ଲେଡ, କଇଁଚି

*କିପରି କରିବ*

ଗୋଟିଏ ଲାଲ ଡ୍ରଇଙ୍ଗ ସିଟ୍ ଉପରେ ପାଖ ଚିତ୍ରଟି ଆଙ୍କ । ଏହାର ବାହାର ଧାରରେ କାଟିଦିଅ । ଏଗୁଡ଼ିକ ତୁମ ଚିତ୍ର ଧନ୍ଦାର ଖଣ୍ଡ ହୋଇଗଲା । ଏବେ ଏଗୁଡ଼ିକ ଯୋଡ଼ି ତଳ ଚିତ୍ରଟି ପୂରା କରିବାକୁ ଚେଷ୍ଟା କର ।





# କାଳି ଚପା

ଏବେ ତ ଆଉ ପ୍ରାୟ କେହି କାଳି କଲମରେ ଲେଖୁନାହାନ୍ତି । ତଥାପି କାଳି କଲମର ଚାହିଦା ଏବେ ବି ରହିଛି । କାଳି କଲମରେ ବେଳେ ବେଳେ କାଳି ଝରିପାରେ । ସେଥିପାଇଁ ଆଗେ ଗୋଟିଏ କାଳି ଚପା ବ୍ୟବହାର କରାଯାଉଥିଲା । ଏବେ ଆମେ ସେହିଭଳି ଗୋଟିଏ ସୁନ୍ଦର କାଳି ଚପା ତିଆରି କରିବା ।

## କ'ଣ ଦରକାର

ମୋଟା କାର୍ଡବୋର୍ଡ, ରଙ୍ଗୀନ ଚିତ୍ର ଥିବା କାଗଜ, ଡ୍ରଇଙ୍ଗ ସିଟ୍, ରଙ୍ଗୀନ କାଗଜ, ବ୍ଲଟିଙ୍ଗ କାଗଜ, ଅଠା

## କିପରି କରିବ



୪୬ x ୩୫ ସେ.ମି. ମାପର ଗୋଟିଏ କାର୍ଡବୋର୍ଡ କାଟ । ଏହାଠାରୁ ୪ ସେ.ମି. ଅଧିକ ଲମ୍ବା ଓ ଚଉଡ଼ାର (୫୦ x ୩୯ ସେ.ମି.) ଗୋଟିଏ ରଙ୍ଗୀନ ଚିତ୍ର ଥିବା କାଗଜ କାଟ । କାର୍ଡବୋର୍ଡଟି ରଙ୍ଗୀନ କାଗଜ ଉପରେ ରଖ ଯେପରି ତା'ର ସବୁପଟେ ୨ ସେ.ମି. ଲେଖାଏଁ ରଙ୍ଗୀନ ଚିତ୍ର କାଗଜ

ବାହାଜି ଜ୍ଞ ିତ । ଙ୍କତ ଣି ୀ ଛପିଗା ଅ
ରଙ୍ଗୀନ ଚିତ୍ର କାଗଜକୁ କାର୍ଡବୋର୍ଡର ପଛକୁ ଭାଙ୍ଗି ଅଠା ଦେଇ ଲଗାଇଦିଅ ।



୧୧.୫ X ୧୧.୫ X ୧୬ ସେ.ମି. ମାପର ଚାରିଖଣ୍ଡ ତିନିକୋଣିଆ ଡ୍ରଇଙ୍ଗ ସିଟ୍ କାଟ । ଏହାଠାରୁ ଅଳ୍ପ ବଡ଼ ଆକାରରେ ରଙ୍ଗୀନ ଚିତ୍ର ଥିବା କାଗଜ କାଟ । ଡ୍ରଇଙ୍ଗ ସିଟ୍‌ରେ ଅଠା ଲଗାଇ ରଙ୍ଗୀନ ଚିତ୍ର କାଗଜ ଉପରେ ରଖ ଯେପରି ତା'ର ସବୁ ପଟକୁ କିଛି କାଗଜ ବଳି ରହିଥିବ । ଏବେ ଏହାକୁ ପ୍ରଥମ କାର୍ଡବୋର୍ଡର କୋଣରେ ରଖି ବଳକା ରଙ୍ଗୀନ କାଗଜକୁ ପଛକୁ ମୋଡ଼ି ଅଠା ଲଗାଇଦିଅ । ଏବେ କାର୍ଡବୋର୍ଡର ଚାରିକୋଣରେ ଚାରୋଟି ଖୋପ ରହିବ ।



ପଛପଟେ ରଙ୍ଗୀନ କାଗଜ ମଡ଼ାଇ ସାମନା ପଟେ କାର୍ଡବୋର୍ଡଠାରୁ ଅଳ୍ପ ସାନ ଗୋଟିଏ ବ୍ଲଟିଙ୍ଗ କାଗଜ ନେଇ ଖୋପରେ ରଖିଦିଅ । କାଳି ଚପା ହୋଇଗଲା ।



# ଲଫାପା ରଖା

*ଆମ ପାଖକୁ କେତେ ଚିଠା, କାର୍ଡ ଆସେ । ସେଗୁଡ଼ିକୁ ଆମେ କିଛିଦିନ ପାଇଁ ସାଇତି ରଖିଥାଏ । ସେଥିପାଇଁ କାଗଜ ତବା ବା ଟିଣ ତବା ଦରକାର ହୋଇଥାଏ । ଖରାଦିନ ଆସିଗଲେ ଆଇସକ୍ରିମ ଖାଇ କାଠି ଫିଙ୍ଗିଦିଏ । ଏବେ ସେହି ଆଇସକ୍ରିମ କାଠିରେ ଗୋଟିଏ ଲଫାପା ରଖା ତବା ତିଆରି କରି ଆମର ଚିଠା ଓ କାର୍ଡ ସାଇତି ରଖିବା ।*

*କ'ଣ ଦରକାର*

ଆଇସକ୍ରିମ କାଠି, ମୋଟା କାର୍ଡବୋର୍ଡ, ରଙ୍ଗୀନ କାଗଜ, ଛୁରୀ, ପେନସିଲ, ଅଠା

*କିପରି କରିବ*

୪୬ X ୩୫ ସେ.ମି. ମାପର ଗୋଟିଏ କାର୍ଡବୋର୍ଡ ନିଅ । ଚିତ୍ର ଭଳି ସେଥିରେ ଚିହ୍ନ ଦିଅ । ଗାର ପଡ଼ିଥିବା ଅଂଶ କାଟିଦିଅ । - - - ଗାର ଉପରେ ହାଲୁକା ଭାବରେ ଛୁରୀ ଚଳାଇଦିଅ ।



ଚିତ୍ରର X ଅଂଶରେ - - - ଗାରର ୪ ସେ.ମି. ଉପରକୁ ଗୋଟିଏ ଗାର ପକାଅ । ଏବେ ଆଇସକ୍ରିମ କାଠିରେ ଅଠା ଲଗାଇ ଏହି ଗାର ଉପରେ ସିଧା କରି ଲଗାଇଦିଅ । ଏହିଭଳି ପୂରା କାଗଜର କାଠି ଲଗାଇଦିଅ ।




କାଠି ଲାଗିବା ପରେ କିଛି ସମୟ ଶୁଖିବା ପାଇଁ ଛାଡ଼ିଦିଅ । ଏବେ ଚିତ୍ରର ଗ ଅଂଶକୁ ଘ ସହ ଓ କ ଅଂଶକୁ ଖ ସହ ଯୋଡ଼ିଦିଅ । ଡବାଟି ଚିତ୍ର ଭଳି ଦେଖାଯିବ ।



ଏବେ ଡବାର ବାହାରେ ମଧ୍ୟ ଆଇସକ୍ରିମ କାଠିରେ ଅଠା ଦେଇ ଯୋଡ଼ିଦିଅ । ଆଇସକ୍ରିମ କାଠିର ଲଫାପା ରଖା ଡବା ତିଆରି ହୋଇଗଲା । ଏବେ ରଙ୍ଗୀନ କାଗଜ ନେଇ ତା' ଉପରେ ତୁମ ପସନ୍ଦର ଚିତ୍ର କାଟି ଲଗାଇଦିଅ ।



# କାଗଜ ଟୁକୁଡ଼ାରୁ କାର୍ଡ଼

*ନୂଆବର୍ଷ, ଦୀପାବଳୀ, ଜନ୍ମଦିନରେ ଆମେ ଅଭିନନ୍ଦନ ପତ୍ର ପଠାଇଥାଏ । ଏହି ବହିରେ ଆମେ ଅନେକ ପ୍ରକାରର ଅଭିନନ୍ଦନ ପତ୍ର ତିଆରି ଶିଖିଛେ । ଏବେ ଆଉ ଗୋଟିଏ ପ୍ରକାରର ଅଭିନନ୍ଦନ ପତ୍ର ତିଆରି କରିବା ।*

*କ'ଣ ଦରକାର*

ଧଳା ମୋଟା କାର୍ଡ, ପେନସିଲ, କଇଁଚି, ରଙ୍ଗୀନ କାଗଜ, ଅଠା

*କିପରି କରିବ*



୧୫ x ୨୦ ସେ.ମି. ମାପର ଗୋଟିଏ ଧଳା ମୋଟା କାର୍ଡ ନିଅ । ଏହାକୁ ଅଧା କରି ଭାଙ୍ଗିଦିଅ ଯେପରି ଅଭିନନ୍ଦନ ପତ୍ରର ଆକାର ୧୫ x ୧୦ ସେ.ମି. ହେବ । କାର୍ଡର ଉପର ପଟେ ଗୋଟିଏ ଚିତ୍ର ଆଙ୍କ ।



ରଙ୍ଗୀନ କାଗଜରୁ କିଛି ପଟି କାଟ । ଏଗୁଡ଼ିକ ପୁଣି ଏପରି କାଟ ଯେପରି ଛୋଟ ଖଣ୍ଡଗୁଡ଼ିକ ଠିକିରି ଆକାରର

ହେବ । ସବୁ ଖଣ୍ଡଗୁଡ଼ିକ ଏକା ଆକାରର ହେବା ଦରକାର ନାହିଁ ।



ଲାଲ ରଙ୍ଗର କାଗଜରୁ ତଳେ ଲଗାଇବା ପାଇଁ ଚିତ୍ର ଭଳି ବିଭିନ୍ନ ଆକୃତିର ତିନିକୋଣିଆ କାଟ ।



ଚିତ୍ର ଦେଖି ଛୋଟ ଠିକିରି ଆକାରର ଓ ବଡ଼ ତିନିକୋଣିଆ ଖଣ୍ଡଗୁଡ଼ିକୁ ଅଠା ଦେଇ ଲଗାଇଦିଅ । କାର୍ଡର ଧାରରେ ଛୋଟ ଲମ୍ବା ଖଣ୍ଡ ଲଗାଇଦିଅ ।

ଜନ୍ମଦିନ ପାଇଁ କିଛି ଶୁଭେଚ୍ଛା ବାର୍ତ୍ତା ଲେଖି ସାଙ୍ଗ ପାଖକୁ ପଠାଇଦିଅ ।



# କାନ୍ଥଝୁଲା ଲଫାପା ମୁଣି

*ଆଗରୁ ଆମେ ଟେବୁଲ ଉପରେ ରଖିବା ପାଇଁ କେତେ ପ୍ରକାରର ଲଫାପା ମୁଣି ତିଆରି କରିଛେ । କିନ୍ତୁ ସବୁବେଳେ ଟେବୁଲ ଉପରେ ରଖିବାକୁ ସୁବିଧା ହୁଏନାହିଁ । ତେଣୁ ଆମ ପଢ଼ିବା ଘରର କାନ୍ଥ ଉପରେ ଗୋଟିଏ ମୁଣି କରି ଲଫାପା ରଖିପାରିବା । ଏବେ ସେହିଭଳି କାନ୍ଥଝୁଲା ଲଫାପା ମୁଣିଟିଏ କରି ଲଫାପା ରଖିବା ।*

*କ'ଣ ଦରକାର*

କାର୍ଡବୋର୍ଡ, ଧଳା ଓ ନୀଳ ରଙ୍ଗର ଅଖା କନା, ପେନସିଲ, କଇଁଚି, ରଙ୍ଗୀନ କାଗଜ, ଅଠା

*କିପରି କରିବ*

୨୫ x ୨୦ ସେ.ମି. ମାପର ଗୋଟିଏ କାର୍ଡବୋର୍ଡ ନେଇ ସେଥିରେ ୨୫ x ୩୦ ସେ.ମି. ମାପର ଧଳା ରଙ୍ଗର ଅଖା କନା ଅଠା ଦେଇ ମଡ଼ାଇଦିଅ । ୨୫ x ୧୩ ସେ.ମି. ମାପର ନୀଳ ରଙ୍ଗର ଅଖା କନା ନେଇ ତାକୁ ଧଳା ଅଖା କନା



ଉପରେ ମଡ଼ାଇଦିଅ । ଏହାର ତିନିପଟେ ଅଠା ଦେବ ଓ ଉପର ପଟ ଲଫାପା ରଖିବା ପାଇଁ ଖୋଲା ଛାଡ଼ିଦେବ ।



ରଙ୍ଗୀନ କାଗଜରୁ ଚଢ଼େଇ, ପତ୍ର, ଫୁଲ ଓ ଡାଳ କାଟ ଏବଂ ଏସବୁକୁ ସଜାଇ ନୀଳ ଅଖା ଉପରେ ଅଠା ଦେଇ ଯୋଡ଼ିଦିଅ ।

ଉପରେ ଦୁଇଟି କଣା କର ଓ ଝୁଲାଇବା ପାଇଁ ସେଥିରେ ଗୋଟିଏ ସୂତା ଗଳାଇଦିଅ ।

ଏବେ କାନ୍ଥଝୁଲା ଲଫାପା ମୁଣି ତିଆରି ହୋଇଗଲା । ଏହାକୁ କାନ୍ଥରେ ଝୁଲାଇ ଲଫାପା ସହିତ ଦରକାରି କାଗଜ ମଧ୍ୟ ରଖିପାରିବ ।



# କପ୍‌ରେ ଖେଳ

*ଆଜିକାଲି ଛୋଟ ଛୋଟ କାଗଜ ବା ପ୍ଲାଷ୍ଟିକର କପ୍ ସବୁଆଡ଼େ ପଡ଼ିରହୁଛି । ସେଗୁଡ଼ିକ ଜମି ବହୁତ ଅପରିଷ୍କାର ମଧ୍ୟ ହେଉଛି । ଆମେ ସେଗୁଡ଼ିକ ବ୍ୟବହାର କରି ଗୋଟିଏ ମଜା ଖେଳ ତିଆରି କରିବା ।*

## *କ'ଣ ଦରକାର*

ଚାରୋଟି କାଗଜ ବା ପ୍ଲାଷ୍ଟିକ ଆଇସକ୍ରିମ କପ୍, ପୁରୁଣାଜୋତା ଡବାର ଖୋଳ, ଚାରୋଟି କାଚଗୋଲି, କଇଁଚି, ରଙ୍ଗ, ଅଠା

## *କିପରି କରିବ*



ଆଇସକ୍ରିମ କପ୍‌ର ଧାରରେ ଛୋଟ କଣାଟିଏ କର । ଦେଖିବ କଣାଟି ଯେପରି ବେଶୀ ବଡ଼ ନହୁଏ । କାଚଗୋଲି ଯିବା ଭଳି କଣା ହେଲେ ଚଳିବ ।



ଜୋତା ଡବା ଖୋଳରେ ଆଇସକ୍ରିମ କପ୍‌ଗୁଡ଼ିକୁ ତଳମୁହାଁ କରି ଅଠାରେ ଲଗାଇଦିଅ ।

ପ୍ରତି କପ୍‌କୁ ଅଲଗା ରଙ୍ଗ ଦେଇଦିଅ ଓ ସେଥିରେ ଗୋଟିଏ ସଂଖ୍ୟା ଲେଖିଦିଅ ।



ଏବେ ଖେଳ ଆରମ୍ଭ କରିବା । ଖୋଳରେ ଚାରୋଟି କାଚଗୋଲି ରଖ । ଡବାକୁ ହଲାଇ ହଲାଇ କାଚଗୋଲିକୁ କଣା ବାଟେ କପ୍ ଭିତରକୁ ପୂରାଇବାକୁ ଚେଷ୍ଟା କର । ଯିଏ ଯେଉଁ କପ୍‌ରେ ଯେତେ ଗୋଲି ପୂରାଇବ ସେହି ଅନୁସାରେ ତା'ର ସେତେ ଅଧିକ ସଂଖ୍ୟା ହେବ । ଦେଖ ତ କାହାର ସଂଖ୍ୟା ଅଧିକ ହେଉଛି ।





# ଉପହାର ଡବା

ପିଲାଙ୍କର ଜନ୍ମଦିନରେ ଆମେ ତାଙ୍କୁ କିଛି ଉପହାର ଦେଇଥିବା । ସେଗୁଡ଼ିକୁ ରଙ୍ଗୀନ କାଗଜରେ ଗୁଡ଼ାଇ ଦେଇଥାଏ । ସେ ତାଙ୍କୁ ଖୋଲିବା ପାଇଁ କାଗଜଟିକୁ ଚିରି ଦିଏ । ଏଥର କିନ୍ତୁ ଆମେ ତାଙ୍କୁ ଗୋଟିଏ ଡବା ତିଆରି କରି ଦେବା । ତାହେଲେ ଉପହାରଟି ସେ ସାଇତି ରଖିବ ।

କ'ଣ ଦରକାର

ମୋଟା ରଙ୍ଗବେରଙ୍ଗର ଡ୍ରଇଙ୍ଗ ସିଟ୍, କାର୍ଡବୋର୍ଡ, ପେନସିଲ, ଛୁରୀ ବା ବ୍ଲେଡ, ସ୍କେଲ, ଅଠା

କିପରି କରିବ

୪୮ x ୩୦ ସେ.ମି. ମାପର ଗୋଟିଏ ଡ୍ରଇଙ୍ଗ ସିଟ୍ ନେଇ ସେଥିରେ ତଳ ଚିତ୍ର ଭଳି ଚିହ୍ନ ଦିଅ ।



- - - ଗାର ଉପରେ ହାଲୁକା ଭାବରେ ଛୁରୀ ଚଳାଇଦିଅ । ଖ ଅଂଶରେ ଗୋଟିଏ ଛୋଟ ଗାର କାଟିଦିଅ । ଗାର ପଡ଼ିଥିବା ଅଂଶତକ କାଟି ଦିଅ । ବାଁ ପଟର ସରୁ ପଟିକୁ ଘ ଅଂଶ ସହ ଅଠା ଦେଇ ଯୋଡ଼ିଦିଅ । ୨ୟ ପଟିକୁ ୪ର୍ଥ ସହ ଓ ୩ୟ ପଟିକୁ ୫ମ ପଟି ସହ ଯୋଡ଼ିଦିଅ ।

କ ଓ ଗ ଅଂଶରେ ଥିବା ତିନିକୋଣିଆ ଭଙ୍ଗା ଗାରରେ ସାବଧାନ ହୋଇ ଭାଙ୍ଗିଦିଅ ।

୧୨.୮ X ୯.୮ ସେ.ମି. ମାପର ଗୋଟିଏ ମୋଟା କାର୍ଡବୋର୍ଡ ନେଇ ଡବାର ଭିତର ପଟେ ତଳେ ଅଠା ଦେଇ ଯୋଡ଼ିଦିଅ । ଏହା ଡବାକୁ ମଜବୁତ କରିବ ।

ଶେଷରେ ଉପର ପଟକୁ ଥିବା ତିନିକୋଣିଆ ଚ ଅଂଶକୁ ଭାଙ୍ଗି ଖ ଅଂଶରେ ହୋଇଥିବା କଟା ଭିତରେ ପୂରାଇ ଡବା ବନ୍ଦ କରିଦିଅ । ଭିତରେ ତୁମର ଉପହାର ରଖି ସାଙ୍ଗକୁ ଦିଅ ।



# ଫଟୋ ବନ୍ଧେଇ

*ପିଲାଦିନର ଫଟୋ ଏବେ ଦେଖିଲେ କେତେ ମଜା ଲାଗୁଛି । ପୁରୁଣା କଥା ସବୁ ମନେ ପଡ଼ିଯାଏ । ଆମର ସ୍ମୃତିକୁ ଧରି ରଖିବା ପାଇଁ ଆମେ ଫଟୋକୁ ବନ୍ଧେଇ କରି ରଖିଥାଏ । ସେହିଭଳି ଗୋଟିଏ ସୁନ୍ଦର ଫଟୋ ବନ୍ଧେଇ ଆମେ କରିପାରିବା ।*

## *କ'ଣ ଦରକାର*

ମୋଟା କାର୍ଡବୋର୍ଡ ବା ମୋଟା ପଟା (ପୁରୁଣା ଖାତାର ମଲାଟ ହେବ), ରଙ୍ଗୀନ କାଗଜ, ମାଟିଆ କାଗଜ ପଟି, ଛୁରୀ ବା ବ୍ଲେଡ, ପେନସିଲ, ସ୍କେଲ, ଅଠା

## *କିପରି କରିବ*



୨୫ x ୧୨ ସେଣ୍ଟିମିଟର ମାପର ଗୋଟିଏ କାର୍ଡବୋର୍ଡ ନେଇ ସେଥିରେ ପାଖ ଚିତ୍ର ଭଳି ଦାଗ ଦିଅ । ଦାଗ ପଡ଼ିଥିବା ଅଂଶକୁ କାଟିଦିଅ ଓ ବଳକା ଅଂଶରେ ରଙ୍ଗୀନ କାଗଜ ମଡ଼ାଇଦିଅ । ଏହା ସାମନା ପଟେ ରହିବ ।

୨୫ x ୧୨ ସେ.ମି. ମାପର ଆଉ ଗୋଟିଏ କାର୍ଡବୋର୍ଡ ନିଅ ଏବଂ ସେଥିରେ ରଙ୍ଗୀନ କାଗଜ ମଡ଼ାଇଦିଅ । ଏହା ପଛପଟେ ରହିବ । କାର୍ଡବୋର୍ଡରୁ ୨୪ x ୨ ସେ.ମି. ମାପର ଦୁଇଟି ଓ ୧୨ x ୨ ସେ.ମି.

ମାପର ଗୋଟିଏ ପଟି କାଟ । ଫଟୋର ପଛପଟ ପାଇଁ ରଖା ଯାଇଥିବା କାର୍ଡବୋର୍ଡର ଲମ୍ବ ପଟେ ଦୁଇଟି ଓ ଚଉଡ଼ା ପଟେ ଗୋଟିଏ ଏହି କାର୍ଡବୋର୍ଡ ପଟି ଅଠାରେ ଲଗାଇଦିଅ । ଉପର ପଟଟି ଖାଲି ରହିଥିବ । ଏହି ପଟିଗୁଡ଼ିକ ଉପରେ ଅଠା ଲଗାଇ ଏଥିରେ ସାମନା ପଟ ପାଇଁ ଥିବା କାର୍ଡବୋର୍ଡଟି ଲଗାଇଦିଅ ।





ଫଟୋକୁ ଠିଆ କରି ରଖିବା ପାଇଁ ପଛପଟେ ଗୋଟିଏ ଢିରା ଦରକାର ।

ଏଥିପାଇଁ ୩୦ x ୫ ସେ.ମି. ମାପରର ଗୋଟିଏ କାର୍ଡବୋର୍ଡ ନିଅ । ଉପର ଚିତ୍ର ଭଳି ଏଥିରେ ଦାଗ (- - -) ଦିଅ । ଦାଗ ଉପରେ ହାଲୁକା ଭାବରେ ବ୍ଲେଡ ବା ଛୁରୀ ଚଲାଇ କାର୍ଡବୋର୍ଡ ପଟିକୁ ଭାଙ୍ଗିଦିଅ ଓ ଫାଟି ନଯିବା ପାଇଁ ମାଟିଆ କାଗଜ ପଟି ଅଠା ଦେଇ ଲଗାଇଦିଅ । ଏହା ଉପରେ ରଙ୍ଗୀନ କାଗଜ ମଡ଼ାଇଦିଅ । ଫଟୋର ପଛପଟେ ଅଠା ଦେଇ ତଳ ଚିତ୍ର ଭଳି ଲଗାଇଦିଅ । ଏବେ ଉପର ଫାଙ୍କା ବାଟେ ଫଟୋ ରଖି ସଜାଇଦିଅ ।





# ଝୁଲନ୍ତା ଘୋଡ଼ା

*ବିଭିନ୍ନ ମେଳାରେ ଗୋଟିଏ ଗୋଲ ତମ୍ବୁରେ ଘୋଡ଼ା ଝୁଲୁଥାଏ ଓ ଛୋଟ ପିଲା ସେଥିରେ ବସି ଘୂରନ୍ତି । ଆମେ ବି ଛୋଟ ଥିବା ବେଳେ ବସି ଘୂରିଥିବା । ଏବେ କାଗଜରେ ସେହିଭଳି ଗୋଟିଏ ଘୋଡ଼ା ଥିବା ଝୁଲା ତିଆରି କରିବା ।*

## *କ'ଣ ଦରକାର*

ଥର୍ମୋକଲ, କାର୍ଡବୋର୍ଡ, ରଙ୍ଗୀନ କାଗଜ, ପେନସିଲ, ସ୍କେଲ, ରଙ୍ଗ, ଛୁରୀ, କଇଁଚି, ଅଠା

## *କିପରି କରିବ*

୫୦ x ୫୦ ସେ.ମି. ମାପର ଗୋଟିଏ କାର୍ଡବୋର୍ଡ ନେଇ ସେଥିରେ ରଙ୍ଗୀନ କାଗଜ ମଡ଼ାଇଦିଅ । ରଙ୍ଗୀନ କାଗଜ ବଦଳରେ ରଙ୍ଗ ମଧ୍ୟ ଦେଇପାରିବ । ଶେଷରେ ଥିବା ଚିତ୍ର ଭଳି ଚକ୍ରି ଆକାରର ବିଭିନ୍ନ ରଙ୍ଗୀନ କାଗଜ କାଟି କାର୍ଡବୋର୍ଡ ଉପରେ ଅଠା ଦେଇ ଲଗାଇଦିଅ ।

ଏବେ ୩୪ x ୧୨ ସେ.ମି. ମାପର ଗୋଟିଏ ଥର୍ମୋକଲ ଖଣ୍ଡ ନେଇ ଚିତ୍ର ଭଳି ଆଙ୍କ ଓ ଗାର ପକା ଅଂଶକୁ କାଟିଦିଅ । ଏହାକୁ କାର୍ଡବୋର୍ଡରେ ଲଗାଇଦିଅ ଏବଂ ରଙ୍ଗ ଓ



ରଙ୍ଗୀନ କାଗଜ ଦେଇ ଏହାକୁ ସଜାଇଦିଅ । ଏହା ଉପରେ ଛୋଟ ଖଣ୍ଡ ଥର୍ମୋକଲ କାଟି ଲଗାଇଦିଅ ଓ ସେଥିରେ ରଙ୍ଗ ଦେଇଦିଅ ।



୪୮ x ୯ ସେ.ମି. ମାପର ଆଉ ଖଣ୍ଡେ ଥର୍ମୋକଲ ନେଇ ସେଥିରେ ଚିତ୍ର ଭଳି ଚିହ୍ନ ଦେଇ ଗାର ପକା ଅଂଶ କାଟିଦିଅ । ଏହାକୁ ପ୍ରଥମ ଥର୍ମୋକଲ ଉପରେ ଲଗାଇଦିଅ ।



୨୯ x ୨୪ ସେ.ମି. ମାପର ଦୁଇଖଣ୍ଡ ଥର୍ମୋକଲରେରେ ଘୋଡ଼ା ଚିତ୍ର କର । ଘୋଡ଼ାରେ ରଙ୍ଗ ଦେଇ ସଜାଇଦିଅ ।

ପ୍ରଥମେ ଗୋଟିଏ ଘୋଡ଼ା ଅଠା ଦେଇ ଲଗାଇଦିଅ ଓ ତା'ଉପରେ ଦ୍ୱିତୀୟ ଘୋଡ଼ାଟି ଲଗାଇଦିଅ । ଦୁଇଟି ମାଟିଆ କାଗଜ ପଟି ଘୋଡ଼ା ପିଠିରୁ ଛାତ ଯାଏଁ ଲଗାଇଦିଅ ।



# ଗିଟାର

*ଆଜିକାଲି କେତେ ପ୍ରକାରର ବାଜା ବାଜୁଛି । ସେ ଭିତରୁ ଗିଟାର ଗୋଟିଏ । ଏଥିରେ ଗୀତର ଧ୍ୱନ ଶୁଣିବାକୁ ବହୁତ ଭଲ ଲାଗେ । ଆମେ କାଗଜରେ ଗୋଟିଏ ଗିଟାର ତିଆରି କରିବା । ଆମ ଗିଟାରରୁ କିନ୍ତୁ ଧ୍ୱନ ବାହାରିବ ନାହିଁ ।*

## *କ'ଣ ଦରକାର*

ମୋଟା କାର୍ଡବୋର୍ଡ, ରଙ୍ଗୀନ ଭେଲଭେଟ କାଗଜ, ପେନସିଲ, ସ୍କେଲ, ମାଟିଆ କାଗଜ ପଟି, ତିନିଟା ସୋଡା ଷ୍ଟ୍ର, ଅଠା

## *କିପରି କରିବ*

ପ୍ରଥମ ଖଣ୍ଡ

୩୨ x ୩୧ ସେ.ମି. ମାପର ଗୋଟିଏ ମୋଟା କାର୍ଡବୋର୍ଡ ନିଅ । ଚିତ୍ର ଭଳି ଏଥିରେ ଚିହ୍ନ ଦିଅ । ଗାରପକା ଅଂଶ କାଟିଦିଅ ଓ ପୁରାଟିରେ ରଙ୍ଗୀନ କାଗଜ ମଡ଼ାଇଦିଅ ।



ପ୍ରଥମ ଖଣ୍ଡ

ଦ୍ୱିତୀୟ ଖଣ୍ଡ

୨୬ x ୧୬ ସେ.ମି. ମାପର

ଆଉ ଗୋଟିଏ କାର୍ଡବୋର୍ଡ ନିଅ ଓ ସେଥିରେ ଚିତ୍ର ଭଳି ଚିହ୍ନ ଦିଅ । - - - ଗାର ଉପରେ ଭାଙ୍ଗିଦିଅ । ଭାଙ୍ଗ ଫାଟି ନଯିବା ପାଇଁ ସେଥିରେ ମାଟିଆ କାଗଜ ପଟି ଲଗାଇଦିଅ । ରଙ୍ଗୀନ କାଗଜ ମଡ଼ାଇଦିଅ । କଳା ରଙ୍ଗ ଦିଆ ଯାଇଥିବା ଅଂଶରେ କାଟିଦିଅ । ଏହାକୁ ଭାଙ୍ଗି ଦେଇ ଅଠା ଦେଇ ଯୋଡ଼ିଦିଅ । ଚିତ୍ରରେ ଦେଖା ଯାଇଥିବା ଭଳି ତିନୋଟି କଣା କର ଯେପରି ସେଥିରେ ସୋଡା ଷ୍ଟ୍ର ପଶିପାରିବ । ଫିକା ରଙ୍ଗ ଦିଆ ଯାଇଥିବା ଅଂଶରେ ଅଠା ଲଗାଇ ତାକୁ ପ୍ରଥମ ଖଣ୍ଡରେ ଯୋଡ଼ିଦିଅ ।



ଦ୍ୱିତୀୟ ଖଣ୍ଡ

### ତୃତୀୟ ଖଣ୍ଡ

୨୯ X ୨୪ ସେ.ମି. ମାପର ଖଣ୍ଡେ କାର୍ଡବୋର୍ଡ ନେଇ ସେଥିରେ ଚିତ୍ର ଭଳି ଚିହ୍ନ ଦିଅ । ଗାରପକା ଅଂଶ କାଟିଦେଇ - - - ଗାର



ତୃତୀୟ ଖଣ୍ଡ

ଉପରେ ଭାଙ୍ଗିଦିଅ । ଭାଙ୍ଗରେ ଆଗ ଥର ଭଳି ମାଟିଆ କାଗଜ ପଟି ଲଗାଇଦିଅ । ଫିକା ରଙ୍ଗ ଅଂଶରେ ଅଠା ଲଗାଇ କ ଧାରରେ ଯୋଡ଼ିଦିଅ । ଏଥର ଆମକୁ ଗୋଟିଏ ଫମ୍ପା ବାକ୍ସ ମିଳିବ । ରଙ୍ଗୀନ କାଗଜ ମଡ଼ାଇଦିଅ ଓ ଖ ଧାରଟି ଦ୍ୱିତୀୟ ଖଣ୍ଡରେ ପୂରାଇଦିଅ ।

## ଚତୁର୍ଥ ଖଣ୍ଡ

୯୭ x ୭ ସେ.ମି. ମାପର ଗୋଟିଏ ସରୁ କାର୍ଡବୋର୍ଡ ନିଅ ଓ ସେଥିରେ ରଙ୍ଗୀନ କାଗଜ ମଡ଼ାଇଦିଅ । ଚିତ୍ରରେ ଦେଖାହେଲା ଭଳି ଢେଉ ଢେଉ କରି କାଟିଦିଅ । କ ଧାରରେ ଅଠା ଲଗାଇ ଦ୍ୱିତୀୟ ଖଣ୍ଡରେ ଥିବା କଟା କଟା ଧାରରେ ଲଗାଇଦିଅ । ଖ ଧାରଟି ଷଷ୍ଠ ଖଣ୍ଡରେ ଯୋଡ଼ାହେବ ।



ଚତୁର୍ଥ ଖଣ୍ଡ

## ପଞ୍ଚମ ଖଣ୍ଡ

୨୪ x ୭୨ ସେ.ମି. ମାପର ଆଉ ଗୋଟିଏ କାର୍ଡବୋର୍ଡ ନେଇ ଚିତ୍ର ଭଳି ଚିହ୍ନ ଦିଅ । - - - ଗାରରେ ଭାଙ୍ଗିଦିଅ ଓ ଭାଙ୍ଗରେ ମାଟିଆ କାଗଜ ପଟି ଲଗାଇଦିଅ । ରଙ୍ଗୀନ କାଗଜ ମଡ଼ାଇଦିଅ । ଗାଢ଼ ରଙ୍ଗର



ପଞ୍ଚମ ଖଣ୍ଡ

ଅଂଶରେ କାଟିଦିଅ । ତିନୋଟି କଣା କର ଯେପରି ଯୋତା ଷ୍ଟ୍ରୁ ପଶିପାରିବ । ଏହି ଖଣ୍ଡଟିକୁ ତୃତୀୟ ଖଣ୍ଡ ଭିତରେ ପୂରାଇଦିଅ । ଫିକା ରଙ୍ଗର ଅଂଶରେ କାଟିଦିଅ । ଏହା ମଧ୍ୟ ଷଷ୍ଠ ଖଣ୍ଡରେ ଯୋଡ଼ାହେବ ।



ଷଷ୍ଠ ଖଣ୍ଡ

## ଷଷ୍ଠ ଖଣ୍ଡ

୫୪ x ୩୧ ସେ.ମି. ମାପର କାର୍ଡବୋର୍ଡ ଖଣ୍ଡେ ନେଇ ଚିତ୍ର ଭଳି ଚିହ୍ନ ଦିଅ । ଗାର ପକା ଅଂଶ କାଟିଦିଅ ଓ ରଙ୍ଗୀନ କାଗଜ ମଡ଼ାଇଦିଅ । ଏହାକୁ ଗିଟାରର ପଛପଟେ ଲଗାଇଦିଅ । ତିନୋଟିଯାକ ଷ୍ଟ୍ରକୁ ଚିତ୍ରରେ ଦେଖାଯାଇଥିବା ଭଳି ପୂରାଇଦିଅ । ଗିଟାର ଉପରେ ରଙ୍ଗୀନ କାଗଜରୁ ବିଭିନ୍ନ ଆକୃତି କାଟି ଲଗାଇ ସଜାଇଦିଅ ।



# ଖ୍ରୀଷ୍ଟମାସର ଗଛ

*ଖ୍ରୀଷ୍ଟମାସରେ ଚାରିଆଡ଼େ କେତେ କ'ଣ ସଜା ହୁଏ । ଗୋଟିଏ ଗଛରେ ଘଣ୍ଟି, କଣ୍ଢେଇ, ତାରା, ଚକୋଲେଟ, ଛୋଟ ଉପହାର ଦେଇ ସଜା ହୁଏ । ଆମେ ସେହିଭଳି ଗୋଟିଏ ଖ୍ରୀଷ୍ଟମାସ ଗଛ ତିଆରି କରି ସଜାଇବା ।*

## *କ'ଣ ଦରକାର*

ସବୁଜ ରଙ୍ଗର ଡ୍ରଇଙ୍ଗ ସିଟ୍ ବା ଭେଲଭେଟ କାଗଜ, ତୁଳା, ଖାଲି ଆଇସକ୍ରିମ କପ୍, ଆଇସକ୍ରିମ କାଠି, ଚକୋଲେଟର ରୂପେଲି ଜରି, ଜରି ଗୁଣ୍ଡ, ଚିକିଟା ମାଟି, କଇଁଚି, ଅଠା

## *କିପରି କରିବ*



ଗୋଟିଏ ସବୁଜ ରଙ୍ଗର ଡ୍ରଇଙ୍ଗ ସିଟ୍ ବା ଭେଲଭେଟ କାଗଜରୁ ପାଖ ଚିତ୍ର ଭଳି ଦୁଇ ଖଣ୍ଡ କାଟ ।

ତଳେ ଗୋଟିଏ ଆଇସକ୍ରିମ କାଠି ଲଗାଇ ତାକୁ ଗଛ ଆକାର ଦିଅ ।

ଆଇସକ୍ରିମ କପ୍‌ରେ ରଙ୍ଗୀନ

କାଗଜ ମଡ଼ାଇ ସେଥିରେ ଚିକିଟା ମାଟି ଭର୍ତ୍ତି କରିଦିଅ। ଗଛରେ ଛୋଟ ଛୋଟ ଘଣ୍ଟା, କଣ୍ଢେଇ, ତାରା, ବଲ୍ ଆଦି କରି ଗଛରେ ଅଠା ମାରି ଲଗାଇଦିଅ କିମ୍ବା ସୂତାରେ ଝୁଲାଇଦିଅ। ଏବେ ଆଇସକ୍ରିମ କାଠିକୁ ଚିକିଟା ମାଟିରେ ପୋତିଦିଅ।







# ଅଭିନନ୍ଦନ ପତ୍ର

*ନୂଆବର୍ଷ ଆସିଗଲେ ଆମେ କେତେ ପ୍ରକାରର ରଙ୍ଗ ବେରଙ୍ଗ ଅଭିନନ୍ଦନ ପତ୍ର କିଣି ପଠାଇଥାଏ । କିନ୍ତୁ ସେସବୁ ହାତରେ ମଧ୍ୟ କରିହେବ ଓ ହାତ ତିଆରି ଅଭିନନ୍ଦନ ପତ୍ରର ମହତ୍ୱ ଅନେକ ବେଶି । ଏଥର ଆଉ ନକିଣି ହାତରେ ତିଆରି କରି ପଠାଇବ ।*

*କ'ଣ ଦରକାର*

ରଙ୍ଗୀନ ଡ୍ରଇଙ୍ଗ କାଗଜ, କାଗଜକଟା ଛୁରୀ ବା କଟର୍, ପେନସିଲ, କଇଁଚି, ଅଠା

*କିପରି କରିବ*

୨୦ ସେ.ମି. ମାପର ଗୋଟିଏ ଗାଢ଼ ରଙ୍ଗର ବର୍ଗାକାର କାଗଜ ନେଇ ଏହାକୁ ଅଧାରୁ ଭାଙ୍ଗି ଦୁଇଭାଗ କର । ଉପର ଧାରକୁ ଲଗାଇ ନଡ଼ିଆ ଗଛର ଚିତ୍ର ଆଙ୍କ । ଚିତ୍ର ଧାରରେ କାଟିଦିଅ । ଏବେ ପତ୍ରଗୁଡ଼ିକ ବାହାରକୁ ଝୁଲି ରହିବ ।



ସବୁଜ ରଙ୍ଗର ଗୋଟିଏ କାଗଜ ନେଇ ସେଥିରେ ଚିତ୍ର ଭଳି ଗୋଟିଏ ଅଙ୍କାବଙ୍କା ଗାର ଟାଣ ଏବଂ ଗାର ଉପରେ କାଟିଦିଅ ।

ଏବେ ଏହାକୁ ନଡ଼ିଆ ଗଛର କଟା ହୋଇଥିବା ପତ୍ର ତଳେ ଅଠା ଦେଇ ଲଗାଇଦିଅ । ସବା ଉପରେ ନାଲି ଓ ହଳଦିଆ କାଗଜରେ କିଛି ନଡ଼ିଆ କାଟି ଲଗାଇଦିଅ । ଭିତର ପଟେ କିଛି ସମ୍ବାଦ ଲେଖି ଅଭିନନ୍ଦନ ପତ୍ରଟିକୁ ସାଙ୍ଗ ପାଖକୁ ପଠାଇଦିଅ । ଏହିଭଳି ଅନ୍ୟ ଚିତ୍ର କାଟି ମଧ୍ୟ ଅଭିନନ୍ଦନ ପତ୍ର ତିଆରି କରିପାରିବ ।







# ସିଂହ ମୁଖା

*ଜୀବଜନ୍ତୁଙ୍କ ବିଷୟରେ ଆମେ ଅନେକ ଗପ ଶୁଣିଛେ । ମୁଖା ପିନ୍ଧି ସେସବୁର କିଛି ଅଭିନୟ ମଧ୍ୟ କରିଥିବା । ସେହିଭଳି ସିଂହର ଗୋଟିଏ ମୁଖା କରି ଦେଖିବା ।*

*କ'ଣ ଦରକାର*

ହଳଦିଆ ଓ ଖଇରିଆ ରଙ୍ଗର କିଛି ଉଲ, ଡ୍ରଇଙ୍ଗ୍ ସିଟ୍, ଫେବିକଲ ଅଠା, କଳା ସ୍କେଚ କଲମ, ମାଟିଆ ରଙ୍ଗର କ୍ରେୟନ

*କିପରି କରିବ*

ଖଣ୍ଡେ ୨୦ x ୧୫ ସେ.ମି. ମାପର ଡ୍ରଇଙ୍ଗ୍ ସିଟ୍ ନିଅ । ତା'ର ମଝିରେ ଚିତ୍ର ଭଳି ସିଂହର ମୁହଁ ଆଙ୍କିଦିଅ । ସେଥିରେ ଆଖି, ନାକ, ନିଶ, ପାଟି ଆଙ୍କିଦିଅ ଓ କ୍ରେୟନ ଘଷି କାଗଜଟିକୁ ମାଟିଆ ରଙ୍ଗ କରିଦିଅ । ଏବେ ସିଂହର ମୁହଁକୁ କାଟିଦିଅ ।



ଆଉ ଖଣ୍ଡେ ୩୦ x ୨୦ ସେ.ମି. ମାପର ଡ୍ରଇଙ୍ଗ୍ ସିଟ୍ ନିଅ । ଏହାର

ମଝିରେ ସିଂହର ମୁହଁକୁ ରଖି ତା'ର ଧାରରେ ଗାର ପକାଅ । ଏବେ ଦ୍ୱିତୀୟ ଡ୍ରଇଙ୍ଗ୍ ସିଟ୍‌ରେ ସିଂହର ମୁହଁ ଆକାରର ଗୋଟିଏ ବାହ୍ୟରେଖା ଚିହ୍ନ ରହିଥିବ ।



ଉଲ ତକ ୫ ସେ.ମି. ଲମ୍ବା ଖଣ୍ଡରେ କାଟିଦିଅ । ମୁହଁର ଚିହ୍ନ ଚାରିପଟେ ଉଲ ଖଣ୍ଡଗୁଡ଼ିକ ଲଗାଇଦିଅ, ଦେଖିବ ଯେପରି ହଳଦିଆ ଓ ଖଇରିଆ ଗୋଟିକ ପରେ ଆରଟି ରହିବ । ଏବେ କଟା ହୋଇଥିବା ସିଂହ ମୁହଁଟିକୁ ଆଣି ଦ୍ୱିତୀୟ କାଗଜର ଚିହ୍ନ ଉପରେ ଅଠାରେ ଲଗାଇଦିଅ । ଉଲଗୁଡ଼ିକ ମୁହଁ ଚାରିପଟେ ବାହାରକୁ ବାହାରି ରହିଥିବ ।



ଦ୍ୱିତୀୟ ଡ୍ରଇଙ୍ଗ ସିଟ୍‌ର ଦୁଇ କଡ଼ରେ ୩ ସେ.ମି. ଲେଖାଏଁ ଛାଡ଼ି ଭିତରକୁ ଦୁଇଟି କଣା କର ଓ ସେଥିରେ ମୋଟା ସୂତା ପୂରାଇଦିଅ । ଏବେ ସିଂହ ମୁଖା ହୋଇଗଲା ।



# କୁକୁର

*କାଗଜ ଖଣ୍ଡେ କାଟି ସେଥିରୁ କେତେ କଥା ତିଆରି କରିବାକୁ ବହୁତ ମଜା ଲାଗେ । ଏଥର ସେହିଭଳି ଖଣ୍ଡିଏ କାଗଜରୁ ଗୋଟିଏ କୁକୁର ତିଆରି କରିବା ।*

କ'ଣ ଦରକାର:

୨ ସେଣ୍ଟିମିଟର ଚଉଡ଼ା ଓ ୩୦ ସେଣ୍ଟିମିଟର ଲମ୍ବାର ଗୋଟିଏ ଡ୍ରଇଙ୍ଗ ସିଟ୍, କଇଁଚି, ପେନ୍‌ସିଲ

କିପରି କରିବ:

ଉପରେ ଦିଆଯାଇଥିବା ମାପର ଗୋଟିଏ ମୋଟା କାଗଜ ପଟି ନେଇ ସେଥିରେ ଚିତ୍ରରେ ଦେଖା ଯାଇଥିବା ଭଳି ଚିହ୍ନ ଦିଅ । ଦୁଇ ପଟୁ ୪କ ସେଣ୍ଟିମିଟର ଲେଖାଏଁ ଛାଡ଼ି ୧ ଓ ୬ ଚିହ୍ନ ଦିଅ । ୧ଠାରୁ ପ୍ରାୟ ୭ ସେଣ୍ଟିମିଟର ଛାଡ଼ି ୨ ଚିହ୍ନ ଦିଅ । ୨ଠାରୁ ୧.୫ ସେ.ମି. ଛାଡ଼ି ୩ ଚିହ୍ନ ଦିଅ । ୩ଠାରୁ



୮.୩ ସେ.ମି. ଛାଡ଼ି ୪ ଓ ୬ଠାରୁ ମଧ୍ୟ ୮.୩ ସେ.ମି. ଛାଡ଼ି ୫ ଚିହ୍ନ ଦିଅ । ୧ ଠାରୁ ୬ ଯାଏଁ ଚିହ୍ନ ଉପରେ କାଟିଦିଅ ।



୧ ଓ ୨ ଚିହ୍ନ ଦିଆଯାଇଥିବା ଅଂଶକୁ ପରସ୍ପର ଭିତରେ ପୁରାଇ ଖଞ୍ଜିଦିଅ । ସେହିପରି ୩ ଓ ୪ ଚିହ୍ନ ଦିଆ ଯାଇଥିବା କଟା ଅଂଶକୁ ୫ ଓ ୬ ଚିହ୍ନ ଦିଆଯାଇଥିବା କଟା ଅଂଶରେ ଖଞ୍ଜିଦିଅ ।



କୁକୁରର ଗୋଡ଼ରେ ଯେଉଁ ଚିହ୍ନ ରହିଛି ତାକୁ ମଧ୍ୟ କାଟିଦିଅ । ମୁଣ୍ଡ ଉପରର କଟାକୁ ଚିତ୍ର ଭଳି ମୋଡ଼ି ତା'ର କାନ ତିଆରି କର । ଏବେ କୁକୁର ହୋଇଗଲା ।



# ଝୁଲନ୍ତା ଜୋକର

ସର୍କସରେ ସବୁଠାରୁ ମଜା ଲାଗେ ଜୋକରକୁ ଦେଖିବା ପାଇଁ । ସେ କେତେ ରକମର ଖେଳ ଦେଖାଏ । କେତେବେଳେ ସେ ଦୋଳିରୁ ଝୁଲୁଝୁଲୁ ତଳକୁ ଖସିପଡ଼େ ତ ଆଉ କେତେବେଳେ ଲମ୍ବା ସାଇକେଲଟିଏ ଚଲାଉଥାଏ । ଆମେ ସେହିଭଳି ଗୋଟିଏ ଜୋକର ତିଆରି କରିବା ଯିଏ ଆପେ ଆପେ ଗଡ଼ି ଯାଉଥିବ ।

*କ'ଣ ଦରକାର*

ପୁରୁଣା ପୋଷ୍ଟକାର୍ଡ, କଇଁଚି, ଅଠା

*କିପରି କରିବ*

ପ୍ରଥମେ ପୋଷ୍ଟକାର୍ଡରୁ ୨ ସେ.ମି. ଚଉଡ଼ାର ଲମ୍ବା ବାଗରେ ଗୋଟିଏ ପଟି କାଟ । ତା'ର ଦୁଇମୁଣ୍ଡକୁ ଯୋଡ଼ି ଗୋଟିଏ ଗୋଲ ତିଆରି କର ।



ଆଉ ଗୋଟିଏ ପୋଷ୍ଟକାର୍ଡରେ ଚିତ୍ର ଭଳି ଜୋକରର ଚିତ୍ର କର । ଜୋକରର ତଳଅଂଶଟି ଆଗରୁ ତିଆରି ହୋଇଥିବା ଗୋଲର



ବ୍ୟାସ ସହ ସମାନ ହେବା ଦରକାର ।



ଜୋକରର ତଳ ପଟେ କାଗଜର ଗୋଲଟିକୁ ଅଠା ଦେଇ ଲଗାଇଦିଅ । ତଳ ଗୋଲରେ କିଛି ମାଟି ବା ସେହିଭଳି କିଛି ଓଜନିଆ ଜିନିଷ ଲଗାଇଦେଲେ ଜୋକରଟି ଠିଆ ହୋଇ ରହିବ । ଗୋଟିଏ ଛୋଟ କାଗଜ ପଟିରେ କିଛି ଉଲ ଲଗାଇ ଜୋକରର ମୁଣ୍ଡ ପାଖରେ ଲଗାଇଦିଅ । ଦେଖିବ ଯେପରି ତଳ ଗୋଲଟି ଯେଉଁ ପଟରେ ରହିଛି ଉଲ ମଧ୍ୟ ସେହି ପଟରେ ରହିବ । ଏବେ ଜୋକରର ଆଗପଟେ ତା'ର ଆଖି, ନାକ, ଲୁଗାପଟା ଆଙ୍କିଦିଅ । ତୁମର ଝୁଲନ୍ତା ଜୋକର ହୋଇଗଲା । ତଳେ ରଖି ଦେଖ କିପରି ତାହା ଝୁଲୁଛି ।



# କାଗଜର ଝୁଲା

କାଗଜରେ କାଟି ଆମେ ଶିକା, ଝାଲେରି ଆଦି କେତେ କ'ଣ ତିଆରି କରିଥିବା । ଏବେ ସେହିଭଳି ଗୋଟିଏ ଝୁଲା କରିବା । ଏଥିରେ ଗୋଟିଏ ଗୋଲ ଭିତରେ ଆଉ ଗୋଟିଏ ଗୋଲ ପଶି ରହିଥିବ । ମଜାର କଥା ହେଉଛି ଯେ ଏଥିରେ ଗୋଟିଏ ଗୋଲ ତା'ପର ଗୋଲର ଓଲଟା ଦିଗକୁ ରହିବ ।

କ'ଣ ଦରକାର:

ଡ୍ରଇଙ୍ଗ ସିଟ୍, ରାଉଣ୍ଡର, କଇଁଚି, କାର୍ବନ କାଗଜ, ବ୍ଲେଡ୍

କିପରି କରିବ:



ଆଗ ପୃଷ୍ଠାରେ ଦିଆ ଯାଇଥିବା ଚିତ୍ରଟିକୁ କାର୍ବନ କାଗଜ ଦେଇ ଗୋଟିଏ ଡ୍ରଇଁସିଟ୍ ଉପରେ ଆଙ୍କିଦିଅ ।

ଚିତ୍ରରେ ଯେତେ ଅଧା ଗୋଲ ଅଛି ସେସବୁକୁ ଗୋଟିଏ ନୂଆ ଧାରୁଆ ବ୍ଲେଡ୍‌ରେ କାଟିଦିଅ ।



କାଟିସାରିବା ପରେ ଚିତ୍ର ଭଳି ସେସବୁକୁ ମୋଡ଼ । ପ୍ରଥମ ଗୋଲଟି ଯେଉଁ ପଟକୁ ରହିବ ତା'ପର ଗୋଲଟି ତା'ର ଓଲଟା ଦିଗକୁ ରହିବ । ସବୁ ଗୋଲଗୁଡ଼ିକୁ ଭାଙ୍ଗିସାରିବା ପରେ କାଗଜର ଝୁଲାଟି ହୋଇଗଲା ।



# ଦିଆସିଲିରୁ ମଣିଷ

*କାର୍ଡବୋର୍ଡ, ଡ୍ରଇଙ୍ଗ ସିଟ୍ ବା ପୁରୁଣା ତବା ଖୋଳରୁ ଛୋଟ ଛୋଟ ମଣିଷ ତିଆରି କରି ଖେଳିବାକୁ ବହୁତ ମଜା ଲାଗେ । ସେମାନଙ୍କୁ ରଙ୍ଗ ବେରଙ୍ଗର ପୋଷାକ ପିନ୍ଧାଇଦେଲେ ସେମାନେ ଆହୁରି ସୁନ୍ଦର ଦେଖାଯାଆନ୍ତି । ଏବେ ଦିଆସିଲି ଖୋଳରେ ସେହିପରି କେତେ ପ୍ରକାର ମଣିଷ ତିଆରି କରିବା ।*

### *କ'ଣ ଦରକାର*

ଖାଲି ଦିଆସିଲି ଖୋଳ, ଧଳା ଏବଂ ରଙ୍ଗୀନ କାଗଜ, ଅଠା, କଲମ ବା ରଙ୍ଗ ପେନସିଲ ।

### *କିପରି କରିବ*

ପ୍ରଥମେ ଦିଆସିଲିର ଭିତର ଖୋଳକୁ ଅଳ୍ପ ଖୋଲି ଚିତ୍ର ଭଳି ରଖ । ଦିଆସିଲିର ଭିତର ଖୋଳର ଯେତେକ ଅଂଶ ବାହାରକୁ ବାହାରି ରହିଛି ସେଥିରେ ଧଳା କାଗଜ ଲଗାଅ । ବାହାର ଖୋଳଟିରେ ରଙ୍ଗୀନ କାଗଜ ଲଗାଅ । ଏବେ ଭିତର ଖୋଳରେ ଲଗା ଯାଇଥିବା ଧଳା କାଗଜରେ ମୁହଁ ଚିତ୍ର କର ।



ବାହାର ଖୋଳଟିରେ ବିଭିନ୍ନ ରଙ୍ଗୀନ କାଗଜ ଲଗାଇ ମଣିଷର ପୋଷାକ ତିଆରି କର । ମଣିଷର ହାତ ପାଇଁ ଗୋଟିଏ ଡ୍ରଇଙ୍ଗ ସିଟ୍‌ରୁ ଚିତ୍ର ଭଳି କାଟି ତାକୁ ଲଗାଇଦିଅ ।

ଏବେ ତୁମର ମଣିଷ ହୋଇଗଲା । ତୁମେ ତାକୁ ଭଳି କି ଭଳି ପୋଷାକ ପିନ୍ଧାଇ କେତେ ରକମର ମଣିଷ ପାଇବ ।







# ଉଲରୁ ଚିତ୍ର

*ଆଗରୁ କେତେ ପ୍ରକାରର ଅଭିନନ୍ଦନ ପତ୍ର ତିଆରି କରିଛେ । ଏବେ ସେହିଭଳି ଆଉ ଗୋଟିଏ ତିଆରି କରିବା । ଏଥର ମା'ଙ୍କର ବଳକା ଉଲ ନେଇ କରିବା ।*

*କ'ଣ ଦରକାର*

ମୋଟା କାର୍ଡ, ଅଲଗା ରଙ୍ଗର ଉଲ, ଲାଲ ରଙ୍ଗର ଫିତା, ସ୍କେଚ କଲମ, ଅଠା

*କିପରି କରିବ*

ଗୋଟିଏ ଆୟତାକାର କାଗଜ ନେଇ ତାକୁ ମଝିରୁ ଅଧା କରି ଭାଙ୍ଗିଦିଅ ।

କାର୍ଡର ଉପର ପରସ୍ତରେ ତିନୋଟି ରଙ୍ଗର ଉଲକୁ ଚିତ୍ର ଭଳି ମୋଡ଼ି ଗୋଲ ଆକାରରେ ଅଠା ଦେଇ ଲଗାଇଦିଅ ।



ଏବେ ପ୍ରତି ଗୋଲ ତଳେ ସରୁ ଡାଳ ଓ ପତ୍ର ଆଙ୍କ । ସବା ତଳେ ଲାଲ ରଙ୍ଗର ଫିତା ନେଇ ଗୋଟିଏ ଫାଶ ପକାଅ ଓ ତାକୁ ଅଠା ଦେଇ ତଳେ ଲଗାଇଦିଅ ।

# ସୃଜନିକାର କିଛି ପ୍ରକାଶନ

*କାଗଜକୁ ନେଇ କିଛି କାମ*

୧. କାଗଜ ଭଙ୍ଗାର ମଜା　　୨. କାଗଜରୁ ଆକୃତି

୩. କାଗଜ ଭଙ୍ଗାରୁ ଜ୍ୟାମିତି　　୪. କାଗଜର ଖେଳ

*ହାତରେ କାମ କରିବା ପାଇଁ*

୫. ବିଜ୍ଞାନ ପରଖ　　୬. ପ୍ରକୃତି ପରଖ

୭. ହାତ ତିଆରି ଖେଳନା　　୮. ଖେଳି ଖେଳି ଶିଖିବା

*ସୃଜନି ଶକ୍ତିର ବିକାଶ ପାଇଁ*

୯. ପତ୍ରରୁ ଚିତ୍ର　　୧୦. ଚିତ୍ର ପାହାଚରେ ଚିଡ଼ିଆଖାନା

୧୧. ସହଜରେ ଆଙ୍କିବା ଗଛଲତା

ଏବଂ ଆହୁରି ଅନେକ ।

# ବିଜ୍ଞାନ ତରଙ୍ଗ

ବିଜ୍ଞାନର ଚିନ୍ତନ, ଧାରା ଓ ଅନୁଭୂତି ଉପରେ ଗୁରୁତ୍ୱ ଦେଉଥିବା ଏହି ପତ୍ରିକା ସ୍କୁଲ/କଲେଜ ପିଲା ତଥା ଶିକ୍ଷକ/ଶିକ୍ଷୟିତ୍ରୀମାନଙ୍କ ପାଇଁ ଏକ ସାଧନ ସାମଗ୍ରୀ । ଶିକ୍ଷା, ବିଜ୍ଞାନ ଓ ବିକାଶ ବିଷୟରେ ଏକ ବିଶେଷ ପଠନ ସାମଗ୍ରୀ ଭାବରେ ମଧ୍ୟ ଏହା ସମସ୍ତଙ୍କ ପାଇଁ ଉପଯୋଗୀ ।

**ବାର୍ଷିକ ଦେୟ**

ଛଅ ଖଣ୍ଡ ପତ୍ରିକା ଓ ତିନି ଖଣ୍ଡ ବହି ପାଇଁ ମୋଟ ଦେୟ ଟ୧୦୦.୦୦

**ବିଶେଷ ସହଯୋଗ**

(ଆଜୀବନ ପ୍ରକାଶନ ଦେୟ ସମେତ) ଟ୫୦୦୦.୦୦ ବା ଅଧିକ ।

# ଅଠା କୁହୁକ

ପିଲା ମାତ୍ରେକେ ସୃଜନଶୀଳ । ସେ ସବୁବେଳେ କିଛି ନା କିଛି କରିବାରେ ଲାଗିଥାଏ । ସେସବୁକୁ ଉତ୍ସାହିତ କରିବା ପାଇଁ, ହାତପାଆନ୍ତା ସାଧାରଣ ଜିନିଷକୁ ନେଇ ପିଲାର କଳ୍ପନାକୁ ରୂପ ଦେବା ପାଇଁ, ଏହି ବହିଟିରେ ଅନେକଗୁଡ଼ିଏ ଜିନିଷ ତିଆରିର ବର୍ଣ୍ଣନା ରହିଛି । ଚିତ୍ର ସହ ଲେଖାଯାଇଥିବା ଏହି କାମଗୁଡ଼ିକ ଯେକୌଣସି ପିଲା କରିପାରିବ । ପିଲାଙ୍କ ସହିତ କାମ କରିବାରେ ଆଗ୍ରହୀ ବୟସ୍କମାନଙ୍କ ପାଇଁ ଏହି ବହିର କାମ ସବୁ ମାଧ୍ୟମ ହୋଇପାରିବ ।

## ଶିବ ପ୍ରସାଦ ପାତ୍ର

(ଜନ୍ମ: ଅକ୍ଟୋବର ୧୪, ୧୯୮୫)

ପିଲାଟି ଦିନରୁ କଳା ପ୍ରତି ଆଗ୍ରହୀ ଶିବ ପ୍ରସାଦ ବର୍ତ୍ତମାନ ବି. କେ. କଲେଜ ଅଫ୍ ଆର୍ଟସ୍‌ରେ ଚତୁର୍ଥ ବାର୍ଷିକ ଛାତ୍ର । ସୃଜନିକାର କାମ ସହ ସେ ଛୋଟ ବେଳରୁ ସଂପୃକ୍ତ । ବିଜ୍ଞାନ ତରଙ୍ଗ ଓ ସୃଜନିକାର ଅନ୍ୟ ପ୍ରକାଶନରେ ସେ ଚିତ୍ର ଦିଗଟି ଦେଖିଥା'ନ୍ତି । ଫେଭିକ୍ରାଫ୍ଟ ପତ୍ରିକାର ପ୍ରେରଣାରୁ ତାଙ୍କର ଏହି ପ୍ରଥମ ବହିଟିର ଯୋଜନା ।

ସୃଜନିକା
ଜାଗମରା, ଡାକ: ଖଣ୍ଡଗିରି,
ଭୁବନେଶ୍ୱର ୭୫୧୦୩୦

ମୂଲ୍ୟ: ୧୫.୦୦ ଟଙ୍କା